# ଶିଶୁଗୀତିକା

ଲେଖିକା :
ଶ୍ରୀମତୀ ସ୍ନେହଲତା ମହାନ୍ତି

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର - ୭୫୧୦୧୪

ମୁଦ୍ରଣ :
ପଦ୍ମାଳୟା ପ୍ରକାଶନୀ,
ଶଙ୍କରପୁର, କଟକ-୧୨

ପ୍ରଥମ ପ୍ରକାଶ : ୧୯୯୩

ମୂଲ୍ୟ : ଏକତ୍ରିଶ ଟଙ୍କା ମାତ୍ର

# SISHUGITIKA

*Composed by*
**Smt. Snehalata Mohanty**

*Published by*
**Orissa Sahitya Akademi**
Bhubaneswar-751014

*Printed at*
**Padmalaya Prakasani,**
Sankarpur, Cuttack-12

First Edition : 1993

Price : **Rupees Thirty-one only**

# ଅଗ୍ରଲେଖ

ଶ୍ରୀମତୀ ସ୍ନେହଲତା ମହାନ୍ତି ନିଜର ଗୃହ ଜଞ୍ଜାଳ ମଧ୍ୟରେ ସାଧ୍ୟମତେ ସାହିତ୍ୟ-ସାଧନାରେ ବ୍ରତୀ ହୋଇ ଓଡ଼ିଆ ଶିଶୁ ସାହିତ୍ୟକୁ ତାଙ୍କର ମନୋଜ୍ଞ ଅବଦାନରେ ଶ୍ରୀମଣ୍ଡିତ କରିଆସିଛନ୍ତି । ତାଙ୍କର ସରଳ ଲାଳିତ୍ୟମୟ ଶିଶୁ-କବିତାଗୁଡ଼ିକ ପାଠକ-ପାଠିକାଙ୍କର ଅତ୍ୟନ୍ତ ଆଦରଣୀୟ । ଶିଶୁ-ମନଲୋଭି କବିତା ରଚନାରେ ତାଙ୍କର ଐକାନ୍ତିକ ନିଷ୍ଠା ଅନସ୍ୱୀକାର୍ଯ୍ୟ ।

ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଲେଖିକାଙ୍କର ଶିଶୁ-କବିତା ସଙ୍କଳନ ପ୍ରକାଶନ ଅବସରରେ ମୁଁ ତାଙ୍କୁ ମୋ'ର ଆନ୍ତରିକ ଅଭିନନ୍ଦନ ଜଣାଉଛି । ଏହି ସଂକଳନଟି ଶିଶୁ-କିଶୋର ପାଠକ-ପାଠିକାଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା ପୋଷଣ କରୁଛି ।

**ମନୋରମା ମହାପାତ୍ର**
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

# ଭୂମିକା

ପଲ୍ଲୀ-ପ୍ରକୃତିର ବର୍ଣ୍ଣାଢ୍ୟ ବୈଭବରେ ବିମଣ୍ଡିତ ପଲ୍ଲୀଗୀତ ସମ୍ଭାର ମଧ୍ୟରୁ ଶିଶୁ-ସଂଗୀତ ଏକ ଅନବଦ୍ୟ ସ୍ୱତଃସ୍ଫୂର୍ତ୍ତ ସହଜାତ ସୃଷ୍ଟି-ସଂପଦ । ଯୁଗେ ଯୁଗେ ଏହା ଲୋକ-ସ୍ମୃତିରେ ଉଜ୍ଜୀବିତ ରହି ରାଜ୍ୟର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ କୋଣେ ଅନୁକୋଣେ ପ୍ରସାରିତ ହୋଇ ଅଗଣିତ ଶିଶୁପ୍ରାଣରେ ହାସ-ଉଲ୍ଲାସର ଫଲ୍‌ଗୁଧାରା ପ୍ରବାହିତ କରିଆସୁଅଛି । ଶିଶୁଗୀତିକା ବା ନାନାବାୟାଗୀତଗୁଡ଼ିକ ଶିଶୁର ଅତି ଆଦରଣୀୟ; ଏହାର ଧର୍ମ ସରଳ, ସୁବୋଧ, ଛନ୍ଦ-ଧ୍ୱନି-ସମନ୍ୱିତ, ସମ୍ମୋହିନୀ ଶକ୍ତିବିଶିଷ୍ଟ । ହାସକୌତୁକଭରା ଶିଶୁ-ମନଲୋଭା ସରଳ, ତରଳ କୋମଳ ଶିଶୁ ମନରେ ଏହି ଗୀତଗୁଡ଼ିକ ଏକ ସ୍ୱପ୍ନିଳ ପରିବେଶ ସୃଷ୍ଟି କରି ଅଶାନ୍ତ ଶିଶୁକୁ କ୍ଷଣକରେ ସମ୍ମୋହିତ କରିପାରେ । ଏଥିରେ ନିହିତ ଥିବା ଭାବକୁ ଶିଶୁ ଗ୍ରହଣ କରିବାକୁ ଅସମର୍ଥ ହେଲେହେଁ ଏହାର ଧ୍ୱନି-ସଂଗୀତ ଶ୍ରବଣରେ ସେ ହୁଏ ମନ୍ତ୍ରମୁଗ୍ଧ । ଏହି ନାନାବାୟାଗୀତ ମଧ୍ୟରେ ଅଛି ଗେଲ କରିବାଗୀତ, ଝୁଲାଇବାଗୀତ, ଶୁଆଇବାଗୀତ ଖୁଆଇବାଗୀତ, ବୁଝାଇବାଗୀତ, ଖେଳ-କୌତୁକ ଗୀତ ଇତ୍ୟାଦି । ସବୁଥିରେ ସେହି ପ୍ରକୃତିର ଅପୂର୍ବ ସୃଷ୍ଟି, କୋମଳମତି ଶିଶୁମାନଙ୍କର ଚିରପରିଚିତ ବାୟାଚଢ଼େଇ, ଡାମରାକାଉ, ଶୁଆଶାରୀ, ବିଲୁଆନନା, ବେଙ୍ଗୁଲିରାଣୀ, ବିଲେଇନାନୀର ଅବତାରଣା ଯାହା ଶିଶୁମନକୁ ଆହ୍ଲାଦିତ ଓ ଉଲ୍ଲସିତ କରେ । ଏଥିରେ ନିହିତ ହାସ୍ୟରସ, ରଙ୍ଗକୌତୁକରେ ସେ କୁରୁ କୁରୁ ହୋଇ ହସି ଉଠେ । କ୍ରନ୍ଦନରତ ଅଶାନ୍ତ ଶିଶୁକୁ ଶାନ୍ତ କରିବାରେ ଏହି ଶିଶୁ-ମନଛୁଆଁ ନାନାବାୟାଗୀତର ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ପ୍ରତ୍ୟେକ ଗୃହିଣୀ ଊଣାଅଧିକେ ନିଶ୍ଚୟ ଉପଲବ୍ଧି କରିଥିବେ । ଓଡ଼ିଆ ସାହିତ୍ୟର ଏକ ଅନବଦ୍ୟ ବିଭବ, ଏହି ଶିଶୁଗୀତିଗୁଡ଼ିକର ଅଧିକ ଅନୁଶୀଳନ, ସଂକଳନ ଓ ସଂଗ୍ରହ ଯେ ଏକାନ୍ତ ଆବଶ୍ୟକ ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ ।

ବରିଷ୍ଠା ଶିଶୁ ସାହିତ୍ୟିକା ଶ୍ରୀମତୀ ସ୍ନେହଲତା ମହାନ୍ତିଙ୍କ ଏହି 'ଶିଶୁଗୀତିକା' ପୁସ୍ତକଟି ପ୍ରାୟ ଶହେ ସତସ୍ତରିଗୋଟି ଶିଶୁ-ମନଛୁଆଁ ଗୀତି-କବିତାର ଏକ ମନୋଜ୍ଞ ସଂକଳନ । ପ୍ରକୃତିର ସେହି ସିଧା ଜୀବମାନଙ୍କୁ ନେଇ ଏବଂ ସଂଗୀତର ଛନ୍ଦ ପଦଲାଳିତ୍ୟକୁ ଆଶ୍ରୟ କରି ଶିଶୁଗୀତିଗୁଡ଼ିକୁ ସେ ନିଜସ୍ୱ କଳାରେ ମହିମାନ୍ୱିତ କରି ଶିଶୁ ମନଲୋଭା କରି ପାରିଛନ୍ତି । ଗୀତ ଛଳରେ ଉଡ଼ାଜାହାଜ, ବେଲୁନ୍, ଠାକୁର, ମନ୍ଦିର ସଂପର୍କରେ ଅବତାରଣା କରି ଶିଶୁର ମାନସିକ ଦିଗ୍‌ବଳୟକୁ ସଂପ୍ରସାରିତ

କରିବାକୁ ଚେଷ୍ଟା କରିଛନ୍ତି । ଏହି ସଂକଳନର ପ୍ରକାଶନ ଅବକାଶରେ ଶ୍ରୀମତୀ ମହାନ୍ତିଙ୍କୁ ତାଙ୍କର ପ୍ରଚେଷ୍ଟାପାଇଁ ମୁଁ ସାଧୁବାଦ ଜଣାଉଛି । ପୂର୍ବରୁ ଏକାଡେମୀ ପକ୍ଷରୁ ଓଡ଼ିଆ ଶିଶୁ ସାହିତ୍ୟ ସଂକଳନ ଓ ଶିଶୁ ସଂଗୀତ ସଂକଳନ ପ୍ରକାଶିତ ହୋଇ ବିଦଗ୍ଧ ପାଠକଙ୍କ ଦ୍ୱାରା ଆଦୃତ ହୋଇଛି । ଶ୍ରୀମତୀ ମହାନ୍ତିଙ୍କ ରଚିତ ଏକ ଭିନ୍ନ ରୁଚିର ଏହି ଏକକ ସଂକଳନଟି ପାଠକପାଠିକାଙ୍କ ଦ୍ୱାରା ଅନୁରୂପ ଆଦୃତ ଲାଭ କରିବ ବୋଲି ମୋର ଆଶା ଓ ବିଶ୍ୱାସ !

ଇନ୍ଦୁ ଭୂଷଣ କର

ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

# ନିଜକଥା

ସ୍ୱାଧୀନତା ପରବର୍ତ୍ତୀ କାଳରେ ଶିକ୍ଷାର ବିକାଶପାଇଁ ଆମ ରାଜ୍ୟରେ ଯେଉଁସବୁ ପଦକ୍ଷେପ ନିଆଯାଇଛି ସେଥିରେ ଏପର୍ଯ୍ୟନ୍ତ ପ୍ରାକ୍ ପ୍ରାଥମିକ ଶିକ୍ଷାପ୍ରତି ସମୁଚିତ ଦୃଷ୍ଟି ଦିଆଯାଇନାହିଁ ଅର୍ଥାତ୍ ଏକ ବର୍ଷରୁ ଛଅବର୍ଷ ଶିଶୁମାନଙ୍କପାଇଁ ଆମ ଓଡ଼ିଆ ସାହିତ୍ୟରେ ସଂଗୀତ ଏବଂ ସାହିତ୍ୟର ଅଭାବ ରହିଛି । ଏହା ହେଉଛି କେତେକ ବରିଷ୍ଠ ଶିଶୁ ସାହିତ୍ୟିକଙ୍କର ମନ୍ତବ୍ୟ ।

ଶିଶୁମାନେ ଦେଶ ଏବଂ ଜାତିର ଭବିଷ୍ୟତ । ସେମାନଙ୍କର ଶାରୀରିକ ବିକାଶ ସହିତ ମାନସିକ ବିକାଶର ଏକାନ୍ତ ପ୍ରୟୋଜନ । ଶାରୀରିକ ବିକାଶ ଲାଗି ସୁଖାଦ୍ୟ ଏବଂ ସ୍ୱାସ୍ଥ୍ୟର ଯତ୍ନ ନେବାପରି ଅପରିହାର୍ଯ୍ୟ ମାନସିକ ବିକାଶ ଲାଗି ସେହିପରି ଶିଶୁସାହିତ୍ୟ ଏବଂ ସଂଗୀତର ଉପଯୋଗ ଏକାନ୍ତ ଆବଶ୍ୟକ । ଶିଶୁମାନଙ୍କର ଏହି ସଂଗୀତକୁ ଇଂରାଜୀରେ Nursery Rhymes କୁହାଯାଏ । ଏହାକୁ ଶିଶୁମାନେ ମା, ଜେଜେମା, ତଥା ପରିବାରର ଅନ୍ୟମାନଙ୍କଠାରୁ ଶୁଣି କିଛିକିଛି ବୁଝନ୍ତି, ମନେରଖନ୍ତି ଏବଂ କିଛିଟା ପ୍ରଭାବିତ ହୁଅନ୍ତି ମଧ୍ୟ । ଏହି ପରିପ୍ରେକ୍ଷୀରେ ଯୁଗ-ଉପଯୋଗୀ ଶିଶୁ ସାହିତ୍ୟ ସୃଷ୍ଟି କରିବା ଲେଖକ ଲେଖିକାମାନଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ ।

ଏହି ସାହିତ୍ୟ-ସଂଗୀତର ଭାଷା ଓ ଭାବ ସରଳ, ସହଜ ଏବଂ ପରିବେଶ-ଭିତ୍ତିକ ହେବା ବାଞ୍ଛନୀୟ । ଆଜିର ଶିଶୁ ଆଧୁନିକ ଜ୍ଞାନବିଜ୍ଞାନ ଦ୍ୱାରା ପ୍ରଭାବିତ ହେଉଛି । ତାର ଦୃଷ୍ଟି ଏବଂ ଚିନ୍ତାଶକ୍ତି କେବଳ ବାଇଚଢ଼େଇ, ବଗବଗୁଲି, ଧୂଳିଆ ଜହ୍ନ, ମହୁମାଛି, ପ୍ରଜାପତି, ନଈ, ପୋଖରୀ ପାହାଡ଼, ବଣ ଇତ୍ୟାଦିର ବର୍ଣ୍ଣନାରେ ସୀମିତ ହୋଇ ରହିନାହିଁ । ଯଦିଓ ପାରମ୍ପରିକ ଶିଶୁଗୀତରେ ଏସବୁ ରହିଥିଲା, ଏବେ ମଧ୍ୟ ରହିଛି ଓ ଭବିଷ୍ୟତରେ ରହିବ । କିନ୍ତୁ ଏହା ବ୍ୟତୀତ ତା'ର ଦୃଷ୍ଟିର ଏବଂ ଚିନ୍ତାର ସୀମା ମଧ୍ୟକୁ ବହୁ ଆଧୁନିକ ପଦାର୍ଥ ଆସିଗଲାଣି, ଆହୁରି ଆସିଯିବ । ସେ ଆଜି ବାଘ, ବିଲେଇ, କୁକୁର, କଣ୍ଢେଇ ସହିତ ରେଡ଼ିଓ-ଟେଲିଭିଜନ୍, ରେଳଗାଡ଼ି, କାର, ବସ୍, ଉଡ଼ାଜାହାଜ, ପାଣିଜାହାଜ, ରକେଟ୍, ଜେଟ୍ ପ୍ରଭୃତି ଖେଳନା ଧରି ଖେଳୁଛି । ତା'ର ଜିଜ୍ଞାସୁ ମନ ନିଶ୍ଚୟ ଏସବୁ ବିଷୟରେ କିଛି ଜାଣିବାକୁ ଚାହୁଁଥିବ, ଏଥିରେ ଦ୍ୱିମତ ନାହିଁ ।

ତେଣୁ ତା'ପାଇଁ ଯେଉଁ ସାହିତ୍ୟ ଏବଂ ସଙ୍ଗୀତ ରଚନା ହେଉଛି ତା' ମଧ୍ୟରେ ଆଧୁନିକ ଯୁଗର ବ୍ୟବହାର୍ଯ୍ୟ ପଦାର୍ଥର ବର୍ଣ୍ଣନା ରହିବା ଉଚିତ । କିନ୍ତୁ ହାସ୍ୟକୌତୁକ ଖେଳ ବିଷୟ ମଧ୍ୟ ତହିଁରୁ ବାଦ୍ ଦିଆଯାଇ ପାରେନା । ଶିଶୁ ସାଧାରଣତଃ ହାସ୍ୟକୌତୁକ ପ୍ରିୟ । ସୁଖଦୁଃଖର ସମସ୍ୟା ବହୁଳ ବୟସଠାରୁ ସେ ଅନେକ ଦୂରରେ ରହିଥାଏ । ଠିକ୍ କଢ଼ଟିଏ ପରି ତା'ର ମନ କୋମଳ ଏବଂ ପବିତ୍ରତାର ପ୍ରତୀକ । ସମସ୍ତ ମାନବିକତା ତା' ମଧ୍ୟରେ ସଞ୍ଚିତ ହୋଇ ରହିଥାଏ—ସନ୍ତର୍ପଣ ସହିତ ତାକୁ ଫୁଟାଇବା ଆମ ପ୍ରତ୍ୟେକଙ୍କର କର୍ତ୍ତବ୍ୟ । ଏଥିପ୍ରତି ସଜାଗ ଦୃଷ୍ଟି ଦେଇ ସାହିତ୍ୟ ଏବଂ ସଙ୍ଗୀତ ସୃଷ୍ଟି କରିବା ସେହି କର୍ତ୍ତବ୍ୟ ମଧ୍ୟରୁ ଅନ୍ୟତମ ।

ଆମର ଅନେକ ପାରମ୍ପରିକ ଶିଶୁସଙ୍ଗୀତ ଥିଲେ ମଧ୍ୟ ଏଇସବୁ ବିଚାରଦ୍ୱାରା ପ୍ରଭାବିତ ହୋଇ ମୁଁ ଏହି ଶିଶୁସଂଗୀତଗୁଡ଼ିକ ରଚନା କରିଛି । ଓଡ଼ିଶା ସାହିତ୍ୟ ଏକାଡେମୀ ଏହାକୁ ଉପଯୁକ୍ତ ମନେକରି ଏହାର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ସ୍ନେହଲତା ମହାନ୍ତି

ଆମ ଝୁନ୍ ମୁନ୍ ସୁନା ଖଡ଼ିକା
କେହ୍ଣ ଦଣେ ନାହିଁ ତାଆ ଭଳିକା ।
ବଡ ହେଲେ ସିଏ ପାଠ ପଢ଼ିବ
ଛଡ଼ବ, ବୁଡ଼ବ ଦେଶ ଗଢ଼ିବ ।
ଜହ୍ନ ଘଇଜରେ ରହିବ ଯାଇ
ସାଁଙ୍ଗେ ନେଇଯିବ ଭଉଣୀ ଭାଇ ।



ଆମ କୁନିଝିଅ ସ୍ୱାଗର ଫୁଲ
ହସଂଟି ତାହାର ଅମୂଲ ମୂଲ
ସେ ହେବ ଯୋଲିସ, ସେ ହେବ ନେତା
ସବୁ ଗୁଣେ ହେବ ଜଗତ ଜିତା ।



ଚୁନୁ ମୁନୁ ଖଇର କାଢ଼
ଝୁଲି ଝୁଲି ଗଲେ ରଜାଙ୍କ ହାଟ
ରଜାଙ୍କ ହାଟର କଉଡ଼ି ସଜ
ଆଜି ସଜବାଜ କାଲିକ ରଜ
ପହିଲି ରଜରେ ନଡ଼ିଆ ମୁଢ଼ି
ଥାଳିରେ ବାଢ଼ିଲେ ଆମର ଝୁଡ଼ି
ପୋଡପିଠା, ବରା, ଆମ୍ବୁ, ପଣସ
ସବୁରି ମୁହଁରେ ଫୁଟିଲା ହସ
ମିଠା ପାନ ଖାଇ ନାଲିଆ ପାଟି
ମଉଜରେ ଗାଆଁ ପଡୁଚି ଫାଟି ।



କୁନକୁ କଏ ମାରିଲା
କୁନ ଧରିଥିଲା ଛେନା-ପୋଡପିଠା
ଛଡ଼େଇ କଏ ଖାଇଲା ?
କୁନ କାନ୍ଦେ କଉଁ କଉଁ
ବାପା ଯାଇଚନ୍ତି ଭୁବନେଶ୍ୱରକୁ
ଆଣିଦେବେ କୋଷଖଇ ।
ଅମ୍ଭର ଛଷ୍ଟେଡ଼ା ଗଜା
କୁନ ଖାଉଥିବ, ହସି ଦେଉଥିବ
ହସୁଥିବେ ଦେଖି ଅଜା ।



ଅର୍ ମେଁ ଛେଳରେ ଡାଳ,ପତର ଖାଅ ।
ଆମ କୁନର ଘୁଙ୍ଗୁର ଅଛି ଗୋଡରେ ତୋର ନାଆ
ଝୁମୁରୁ ଝୁମୁ ନାଚ ନାଚରୁ ଗୀତ ଗୋଟିଏ ଗାଅ
ଅମର କୁନ ତାଳି ବଜେଇ କହିବ ବାହା ବାହା
ଦେଖିବେ ତା'ର ଭାଇ ଭଉଣୀ ଦେଖିବେ ବାପା, ମାଆ ।
କୁନର ଅଜା ଝୁମକ ବୋଲି ଦେବେ ତୋହର ନାଆଁ



କୁଆଁର ପୁନେଇଁ ଜହ୍ନ
ନାଉ ଫୁଲ ପରି ଦାଉ ଦାଉ ଦିଶେ,
ସେଇ ଜହ୍ନଠାରେ ମନ ।
ମୋ କୁନ ଖେଳିବ ପୁଚ
ଆଉ ଯେତେ ଝିଅ ହଟି ଯାଇ ସବୁ
ପଛକୁ ଆସିବେ ଘୁଞ୍ଚି ।



ତାଳି ତାଳି ମୋର ଧନମାଳୀ
ଧନମାଳୀ ପିବ କାଳୀଗଳି ।
ପହୁଡ଼ ଫିଟିଲେ ପହିଲେ ଦେଖିବ
ଧନମାଳୀ ମୋର ମାଆକାଳୀ ।
ମିଠେଇ, କଦଳୀ, ଲଡ୍ଡୁ, ଗଜା
କିଣି ଆଣିଚ ସେ ହବ ପୂଜା ।
ଥାଳି ଥାଳି ଭୋଗ ଝଙ୍କେ ନେଇ
ଦେଇ ଆସିବ ସେ ସାଇଭାଇ ।

ଟିକି ଟିକି ପାଦ ଥକିଯିବ ତା'ର
କଟକ ସହର ବୁଲି ବୁଲି
ଚାଲି ଚାଲି ମୋ'ର ଧନମାଳୀ ।



ହାତୀ ବୁଲେ ଝୁଲି ଝୁଲି
ଆମ ପୁଅ ଯିବ ରକେଟରେ ବସି
ଆକାଶ ରାଇଜ ବୁଲି ।
ତାର ଫୁଲ ଯେଠି ଫୁଟେ
ନାଲିଆ ଅବିର ବୁଣି ବୁଣି ପୁଣି
ସକାଳୁ ସୂରୁଯ ଉଠେ ।



ଆମ କୁନ୍‌ମୁନ ସୁନାଥାଳିଆ ।
କେହୁ ଦଶେ ନାହିଁ ତାହା ଭଳିଆ ।
ଆମ କୁନ୍‌ମୁନ ବୁଦ୍ଧିର ଖଣି
ପିଲାଙ୍କ ଭିତରେ ମଉଡ଼ମଣି
ହସନ୍ତି ତାହାର ମଲ୍ଲିକଢ଼ିଆ
ଗୀତ ଗାଏ ସିଏ ସ୍ୱର ବଢ଼ିଆ ।



ଝୁଲରେ ହାତୀ ଝୁଲ୍, ବାଆପାଣି ଖାଇ ଫୁଲ
ହାତୀ ଝୁଲୁଥାଏ ବଣ ରାଇଜରେ ବରଡ଼ାଳ ଖାଇବାକୁ
କୁନ ଝୁଲୁଥାଏ ମାଆଙ୍କ କୋଳରେ ଲଡ଼ୁଟିଏ ଖାଇବାକୁ ।
ଝୁଲୁ ଝୁଲୁ ହାତୀ ଢ଼ୁଳେଇ ପଡ଼ୁଚି ଧୂଳିରେ ଧୂସର ଦେହ ।
କୁନା ଝୁଲି ଝୁଲି ହାଲିଆ ହେଲାଣି ଶେଯରେ ଶୁଆଇ ଦିଅ ।



ଖରା ମାଆ ଖରା ଦେବ, କାଦୁଅ ବାଟ ଶୁଖେଇ ଦେବ ।
ବରଷା ଯାଉ ସରି ।
ଆମର 'ଜଗୁ' ଇସ୍କୁଲ ଯିବ ବହି ସିଲଟ ଧରି ।



ଆମ 'କୁନା' କଥା ସବୁଠୁ ମିଠା
ସତେ ଅବା ଲଡ଼ୁ, ଆରିଷା ପିଠା

ହସିଦେଲେ ସିଏ ମୁକ୍ତା ଝରେ
ଗୁଲୁଥିଲେ ଫୁଲ ଫୁଟଇ ତଳେ ।
କାନ୍ଦିଲେ ସେ ହୁଏ ମେଘ ବରଷା
ଖେଳଟି ତାହାର ବଡ଼ ସରସା ।

ନାଚୁଥାଏ ଯେବେ ବଜେଇ ତାଳି,
ଗୀତ ଗାଇ କୁନ ଧରଇ ଘାଳି
କୁନା ମାମୁଁଘର କଟକ ସହର
କାଠ ଯୋଡ଼ି ନଈ ପାଖେ ।
ଗୋଳି ପାଣି ଆଣି ବଢ଼ିଲେ ସେ ନଈ
ଘୂଣୁ ଘୂ' ଶବଦେ ଡାକେ ।
ଅତଡ଼ା ଖସଇ, ଭଉଁରୀ ଖେଳଇ
ପାଣି ଗୁଳେ ଜଳ ଜଳ ।
କୁନ ଦେଖୁଥାଏ କୂଳେ ଠିଆ ହୋଇ
ଟିକିଏ ନ ଥାଏ ଡ଼ର ।



ବଗୁଲି ବସାରେ ଛଅଟି ଛୁଆ ।
ଗୋଟିଏ ଖାଏ ଚଣାମୁଆଁ ।
ଆରଟି ଖାଏ ମାଛ ଭଜା ।
ସବାସାନଟିର ଛେନାଗଜା ।
ବଗୁଲି ନାକରେ ସୁନା ଫାଶିଆ ।
ସବୁଦନେ ବଗ ପର-ବାସିଆ ।



ନାଚ ଗଲା ମୂଷାଛୁଆ ପାଚଗଲା ଉଉଁଚ
କୁନା ମାଉଁ ନାଇଛନ୍ତି ସରୁ ସରୁ ପଉଞ୍ଚ
ଥୁରୁ ଥୁରୁ ଆଈ ତା'ର ନଈଁ ଗୁଲୁ ଆଆନ୍ତି
କୁନାକୁ ବସେଇ କୋଳେ, କେତେ ଗୀତ ଗାଆନ୍ତି ।
ମାମୁଁ ଘର ଗାଆଁ ମୁଣ୍ଡେ ଜଉଁ ପଦ୍ମ ଗଡ଼ିଆ
ଶହ ଶହ ଫୁଲ ଫୁଟି ଦଶେ ଖଣ ବଢ଼ିଆ
ଅଜାଙ୍କର ମଜାଗପ ଖଣଭଲ ଲାଗେ ରେ ।
କୁନା ସର୍କସ୍ ଦେଖିଯାଏ ମାମୁଁଙ୍କର ସାଙ୍ଗରେ ।



କୁନକୁ ମାଇଲେ ଶାଶୁ ।
ପଠେଇ ଦେବି ମୁଁ ମଟର ଗାଡ଼ି କେ
କୁନି ଶାଶୁଘରୁ ଆସୁ ।
ଖିଆ ଯାଇଥିବେ ଆଣିବା ପାଇଁକି
ପୋଛି ଦେବେ କୁନି ଲୁହ ।
ଖିଆଙ୍କି ଦେଖିଲେ ଝଟକା ଉଠିବ
କୁନର ଶୁଖିଲା ମୁହଁ ।

□

ଏ ହାତେ ବନ୍ଧୁକ ସେ ହାତେ ବାଡ଼ି ।
ବୀରବେଶେ 'ଜିଗୁ' ଯାଉଛି ମାଡ଼ି ।
ପୁଷି 'ତା'କୁ ଦେଖି ଲୁଚିଲା ଯାଇ ।
ଭାଲୁଆ ଦଉଡ଼ି ଗଲା ପଳାଇ ।
ବାଘୁଣୀକୁ ଦେଖି ଟେକିଲା ବାଡ଼ି ।
ପଳାଇଲା ସିଏ ଗାଈକୁ ଛାଡ଼ି ।
ଜେଜେ କହିଲେ ତୁ ହୋଇଲେ ବଡ ।
ଲଢେଇ କରିବୁ ଜିଣିବୁ ଗଡ଼ ।

□

ଆମ କୁନିଟି ବୋହୂ ସାଜିବ ନାଲିଆ ପାଟ ପିନ୍ଧି ।
ଜରି ଓଢ଼ଣୀ ମଥାରେ ଦେବ କପାଳେ ଦେବ ବିନ୍ଦି ।
ଚନ୍ଦନ ପାଟି-କଜଳ ଗାର
ମାନିବ ତା'କୁ ବହୁତ ଭଲ
ପିନ୍ଧିବ ପୁଣି କଙ୍କଣ, ଚୂଡ଼ି, ନାଲିପଥର ମୁଦି ।
ପାଦେ ବାଜେଣୀ ପାଉଜ, ପଟି
ଗଳାରେ ଥିବ ସୁନାହାରଟି
ବର ସାଙ୍ଗରେ ବିଦା ହୋଇବ ଗାଡ଼ିରେ କାନ୍ଦି କାନ୍ଦି ।

□

ପକେଇ ଦେବିରେ ପିଣ୍ଡାତଳକୁ
କାଉ ନେଇଯିବ ମାମୁଁ ଘରକୁ ।
ମାମୁଁଙ୍କ ଦୁଆରେ ଦବସେ ଥୋଇ
ମାଇଁ କାଟୁଥିବେ ଶାକୁର, ମେନ୍ଧା ।
ପଚାରିବେ ସିଏ ଏଇଟି କିଏ ?
ମାମୁଁ କହିବେ ଏ ଭଣଜାଟିଏ ।

କାଖ କରି ତାକୁ ଘରକୁ ନିଅ
କାଳୀଗାଈ କ୍ଷୀର ପିଆଇ ଦିଅ ।
ପାଟ ଝୁଲଣାରେ ଦିଅ ଝୁଲେଇ
ଖେଳିବାକୁ ଦିଅ ସୁନା କୁଲେଇ ।
ସୁନା କୁଲେଇରେ ରୁପାର ଝର୍ଗ
ଆମ ଭଣଜାଟି ଅସଲ ସ୍ୱର୍ଗ ।
ବଡ଼ହେଲେ ସିଏ ପାଠ ପଢ଼ିବ
କେତେ ଭଲ ଭଲ କାମ କରିବ ।
ସ୍ୱପ୍ନ ରାଇଜରେ ରହିବ ଯାଇ
ସାଙ୍ଗେ ନେଇଯିବ ଭଉଣୀଭାଇ ।



ଜଗୁ ଯାଇଥିଲା ଆଳି ।
ଭାଇ ପାଇଁ ତା'ର ଜାମା ଆଣିଥିଲା
ଭଉଣୀ ପାଇଁକ ମାଳ ।
ମାଳରେ ପଥର ଝର୍ଗ
ଗରମ ଗୁଦର ଦହ୍ୱରେ ପକେଇ
ପୁଚ୍ଛି ପୋଉଁ ଥିଲା ଖର୍ଗ ।



ମଞ୍ଜିଟିଏ ପୋତିବାରୁ ହେଲା ସିଏ ଗଛ
ସେ ଗଛଟି ଉଠିଥିଲା ମାମୁଁ ଘର ପଛ ।
ଜାମୁକୋଳି ଫଳ ତହିଁ ଖେଳନ୍ତି ଦୋଳ ।
ଅଜା ନୁଆଁଇଲେ ଡାଳ ଆଈ ନେଲେ ତୋଳି ।
କୋଳି ଭାରି ଖଟା ।
ଅଜା ଆଈ ଖାଇଦେଇ ହେଲେ ହଟ ହଟା ।
ପେଟ ଟାଣି ହୋଇ ତାଙ୍କ୍ର କଲା ଦଲାପଟା ।



ମୋ ଜଗୁ ଦେଖୁଚି ମା ଆକୋଳେ ବସି କୁଆଁର ପୁନେଇ ଜହ୍ନ
କେଉଁଦିନ ଯିବ ଜହ୍ନ ପାଖକୁ ସେ ଭାବୁଚି ମନକୁ ମନ ।
ସେଠିକୁ ଗଲେ ସେ ସେଇ ରାଇଜର-ନୂଆ ଜନପଦକୁ ଦେଖି
ସାଥିପିଲାଙ୍କର ପାଖକୁ ଗୋଟିଏ ଚଠି ସେଠୁ ଦେବ ଲେଖି ।



ମାମୀ ଯାଇଥିଲେ ଧାନ ବିଲକୁ
ଧରି ଆଣିଥିଲେ ଶଙ୍ଖଚିଲକୁ ।
ଶଙ୍ଖଚିଲ କଲା ଗଛରେ ବସା
ଅମଳ ହେଲାଣି ତେଲିଆ ଖସା
ତେଲିଆ ଖସାରେ ଗଣେଶ ଲଡୁ
ଜହ୍ନ ଧରିଥିଲେ ସୁନାର ଗଡୁ ।
ସୁନାର ଗଡୁରେ ଗଙ୍ଗାର ପାଣି
ସେ ପାଣିକୁ ପିଏ ମୋ ପୁଅ ଗୁଣି ।



ଆ ଜହ୍ନମାମୁଁ ସରଗ ଶଶୀ
ମୋ ପୁଅ ହାତରେ ପଡ଼ରେ ଖସି ।
ତୋତେ ଛୁଁଇ ପିଏ କାନ୍ଦୁଚି ଖାଲି
ଗୋରା ମୁହଁ ପଡ଼ିଗଲାଣି କାଳି ।
ତୁ ଆସିଲେ ପିଏ ଖାଇବ ଭାତ
ଦେଖିପିବ ତୁହେଁ ଦଶଗ୍ର ଯାତ ।
ପଢ଼ିବ-ଖେଳିବ-ତୋଳିବ କୋଳ
ନାଚିବ, ଗାଇବ, ଝୁଲିବ ଦୋଳ ।



ଇଚିଡ଼ି ମିଚିଡ଼ି ଚମ୍ ଚଡ଼ି ଚଡ଼ି
ବାଗରେ କାକୁଡ଼ି କଷି,
ପାକଲା ଦାଢ଼ିଆ ଆମର ଅଜାଙ୍କ
ବୟସ ହେଲାଣି ଅଶୀ ।
ପାକୁଆ ପାଟିରେ ହସିଦେଲେ ପିଏ
ଆମକୁ ମାଡ଼ଇ ହସ
ପିଠିକୁ ଆମର ଆଉଁସି କହନ୍ତି
ଆସ ମୋ ପାଖରେ ବସ ।



'ଜହ୍ନର' ଜନମ ଦିନରେ ।
ବାପା ଆଣି ଦେବେ ଜାମା, ଜୋତା, ମୋଜା
ଜାଣି ଜହ୍ନ ବାବୁ ମନରେ ।

ଦାଦା ଆଣିଦେବେ ଉଡ଼ାଜାହାଜ
ସେ ଉପରକୁ ଯିବ ଉଡ଼ି
ମାଆ କରଥିବେ କ୍ଷିରି, ମାଲପୁଆ
ପୁଣ ଗୁଣିଥିବେ ଖୁଡ଼ି ।
ଅପା ଦେଇଥିବେ ଚନ୍ଦନ ଲଗେଇ
କେତେ କୋଟିକାମ କରି
ନୂଆ ସବୁ ପିନ୍ଧି ଜାଉ ଖେଳୁଥିବ
ଖେଳନା ସବୁକୁ ଧରି ।



ହୁଟୁରୁ ଭୁଟୁରୁ, ମୁଟୁରୁ ମୁଣ୍ଡି
କାଲୀ ବଲେଇର ମନଟି ଖୁସି
ଆଜ ତା' ବାହାଘର ।
ବେଦୀ ଉପରେ ବସିଚ ସିଏ ପାଖରେ ତା'ର ବର ।



ଜେଜେ ବନକର ବଜାର ଗଲେ
ଆମ ପୁଅ ପାଇଁ ପେଡ଼ା ଆଣିଲେ ।
ଆଙ୍ଗୁର ଆଣିଲେ ଲିଚୁ, କଦଳୀ
ପୁଅ କାନ୍ଦ ମୁହଁ ଗଲ ବଦଳି ।
ଜେଜେଙ୍କୁ ଦେଲା ସେ ଜଜେ ଖାଇଲା
ଗପ ଶୁଣିବାକୁ ବସି ପଇଲା ।
ଗପ ଶୁଣୁ ଶୁଣୁ ହୋଇଲା ସଞ୍ଜ
ଜେଜେ କହିଲେ ରେ ଶୁଣ୍ ନାତି ।
ଖାଇ ପିଇ ଚାଲ ଶୋଇ ପଡ଼ିବା
ସକାଳୁ ଉଠିଲେ ପାଠ ପଢ଼ିବା ।



ଉଡ଼ାଜାହାଜ ଉଡ଼ାଜାହାଜ ତଳକୁ ଚାଲିଆ ।
ପୁଅକୁ ମୋର ବସେଇ ନେଇ ଉପରେ ଉଡ଼ିଯାଆ ।
ଘୁଡ଼ିବେ ତାକୁ ବିଦେଶେ ନେଇ
ମୋ ପୁଅ ପାଠ ପଢ଼ିବ ତହିଁ
ବୁଲିବ କେତେ ଦେଶ ବିଦେଶ
ମନ ଖୁସିରେ ତା'ର
ଫେରି ଆସିଲେ ବୁହାଇ ଦବ ଘିଅ, ମହୁର ଧାର ।



କୁନି ଶାଶୁଙ୍କର ବାଁ ବରଡା
ଘୋଡ଼ା ରଖିଛନ୍ତି ଘୋଡ଼ାକୁ ଘୋଡ଼ା ।
ଗାଈ ରଖିଛନ୍ତି ଶହକୁ ଶହ
ଗୃଷ କରୁଛନ୍ତି ଗହମ ଯଅ ।
ଧାନର ଅମାର ପଡ଼ୁଛି ଫାଟି
ଖାଇ ଭଲ ଆମ କୁନି ଶାଶୁଟି ।
କୋଳରେ ବସେଇ ଖୁଆଇ ଦିଏ
ପିଠିକି ଆଉଁସି ଶୁଆଇ ଦିଏ ।
ଅଝଟ ହୋଇଲେ ଆମର କୁନି
ଗେଲ କରି ତାକୁ କରଇ ଚୁନି ।



ଅଗଣାରେ ଝୁଲେ ଦୋଳି
ଦୋଳି ଖେଳି ପୁଅ ହାଲିଆ ହେଲାଣି
　　କୋଳକୁ ଆଣରେ ତୋଳି ।
ପୋଛିଦିଅ ତା'ର ଝାଳ
କାଲି ହେବ ପୁଅ ଜନମ ଦିନ ସେ
　　ପିନ୍ଧିବ ଗଜରା ମାଳ ।



ନଈ ବନ୍ଧଯାଏ ପୂରୁବ ମୁହାଁଳେ
　　ମାଟି ବାଲି ନିଏ ଟାଡ଼ି
ନଈ କୂଳେ କୂଳେ ଲଗିଚି ଦେଖିଲେ
　　ବଗ ବଗୁଲିଙ୍କ ଧାଡ଼ି ।
ନଈରେ ଗୁଲୁଚି ଡଙ୍ଗା
ମୋ ପୁଅ ଦେହରେ ଖରା ଧାସ ବାଜି
　　ମୁହଁ ଦିଶୁଅଛି ରଙ୍ଗା ।



ଢୋଲ ବାଜେ ଢାଉଁ ଢାଉଁ
କୁମର ହଟ୍ଟରେ ଜରିଫୁଲ ଜାମା ଦଶୁଥାଏ ଦାଉ ଦାଉ ।
କୁନି ଦେଖିଯିବ ଯାତ
ବାପା କିଣି ଦେବେ ସୁନାହାର ଆଉ ମାଆ କିଣି ଦେବେ ପାଟ ।
ଭାଇ କିଣି ଦେବେ ଚୂଡ଼ି
ନାଲି ପଥରର ସୁନା ମୁଦିଟିଏ କିଣି ଦେବେ ଦାଦା ଖୁଡ଼ୀ ।
ଆଉ ଦରକାର ଯାହା
ବଣିଆକୁ ଡାକି ବରାଦ କରିବେ ଜେଜେ ଆଉ ଜେଜେମାଆ ।



ନଡ଼ିଆ ଛଡ଼େଇ ପକେଇ ଦେଲିଲେ ବାର ଭିତରକୁ କତା
'ଜିତୁ' ଯାଉଥିଲା ବରଷା ବେଳେ ସେ ଧରିଥିଲା ଟିକି'ଛତା ।
ଛତାର ବଙ୍କୁଲି ବାଡ଼ି
ଜିତୁ ଯେବେ ମୋର ଗୁକାସି କରିବ
କିଣି ଦେବ ନୂଆ ଗାଡ଼ି ।



"କାଠହଣା" ଦେଏ କାଠ ତୁ ହାଣି
ଖେପେଇ କରିବ ଆମର କୁନି ।
କାଟି, ବାଟି, ସବୁ ରଖିଚ ସିଏ
ତାଆ ପରି ନାହିଁ ସିଆଣା କିଏ ।
କରିବ ବେସର, ଢଅଣ, ଭଜା
କୁନା ସାଙ୍ଗେ ବସି ମାରିବ ମଜା ।
ଜେଜଙ୍କ ପାଖରେ ବସିବ ଯାଇ
କହିବ 'ସେ' ହଅ ପାଠ ପଢ଼ାଇ ।



କାନ୍ଦନାହିଁ ଧନ ଧୂଳିରେ ଗଡ଼ି ତୁ ଦେହ ହୋଇଯିବ ମଳି
ମଳି କରି ଆଖି ନାଲି ପଡ଼ିଯିବ, ଧାର ଧାର ଲୁହ ଝରି ।
ଭାଙ୍ଗିଯାଇଥିଲେ ଗଢ଼ାଇ ଦେବ ମୁଁ ହଜିଥିଲେ ଦେବ ଖୋଜି
କାଲି ଆମେ ଯିବା ନନ୍ଦନ କାନନ କରିବାକୁ ବଣ ଭୋଜି ।



ଉଠ ଧନ ମୋର ରାତି ପାହିଗଲା ସୂରୁଯ ଆସିଲେ ଉଇଁ
ମାଳ ମାଳ ପକ୍ଷୀ ଉଡ଼ି ଯାଉଚନ୍ତି ଦେଖରେ ଆକା'ଶ ଚୁହି ।
ଗୋଟି ଗୋଟି ହୋଇ କାକର ଟୋପାଳେ ପଡ଼ିଅଛି ଘାସ ପରେ
ପାରେଶ୍ୱ ଗଛରେ କାଉଟିଏ ବସି କାଆ କାଆ ରାବକରେ ।
କୁନା, ମୀନା, ଲୁସି ଗାଧୋଇ ପାଧୋଇ ଖାଇଲେଣି ଜଳଖିଆ
ତୁ ଯେବେ ଶୋଇବୁ ସବୁପିଲା ତୋତେ ଡାକବେଟି ଅଳସୁଆ ।
କୁନା'ରେ ମୁଁ ତୋତେ କୋଳରେ ଧରୁଚି କୁନକୁ ଶୁଆଇ ଦେଇ
ତୁମେ ଦୁହେଁ ଯାକ ସୁନା ପୁଅ ଝିଅ ତୁମ ପରି କେହୁ ନାହିଁ ।
କୁନ ହସୁଥିଲେ ମୁକୁତା ଝରଇ ତୁ ହସିଲେ ଝରେ ହୀରା ।
କୁନଟିତ ମୋର ସରଗର ପରୀ ତୁ ଚାନ୍ଦଟିଏ ପରା ।



ଦୁମୁ ଦୁମୁକା
ଚିଣ ପତରରେ ଗୋଡ଼ି ଝୁମୁକା
ବଜେଇଲେ ଶୁଭେ ଝୁମୁକେ ଝାଇଁ
ଆମ ପୁଅ ଜମା କାନ୍ଦଇ ନାହିଁ ।
ଦାଣ୍ଡେ ଯେବେ ଯାଇ ଖେଳଇ ବାଲି
ଘର ଗୋଟାଯାକ ଲାଗଇ ଖାଲି ।
ନାଚୁଥାଏ ଯେବେ ବଜାଇ ତାଳି
ଭାରି ଭଲ ଦିଶେ ମୋ ଗଳାମାଳି ।
ହସଟି ତାହାର ବଡ଼ ସୁନ୍ଦର
ଖେଳି ବୁଲି କରେ ଭାରି ହୁଲ୍ଲର ।
ଗୁଲୁ ଗୁଲୁ କଥା ମନ୍ତ୍ରରେ ଭିଜା
ରେକର୍ଡ଼ ତାହାକୁ କରନ୍ତି ଅଜା ।



ହୁଆ ବାଇଆରେ ଯା, ଯା, ଘରକୁ
କୁହୁଡ଼ି କାକର ମାଡ଼ି ଆସୁଚରେ 'ଜରୁ' ଟାଙ୍ଗରା ମୁଣ୍ଡକୁ ।
ବାପା ଆଣିଥିଲେ ନଥା ଟୋପିଟିଏ ଟାଙ୍ଗରା ମୁଣ୍ଡଟି ପାଇଁ
ନେତାଟିଏ ପରି ଦିଶେ ଆମ ପୁଅ ଟୋପିଟି ମଥାରେ ଦେଇ ।



ବାଗରେ ମାଳତୀ ଲତା
ଗୋଟିଏ ଫୁଲ ଫୁଟିଚି ଉଠିବ ଗୋ
ଶୁଣିଦେଲେ 'ଜଉ' କଥା ।
ବାଗ ବରଗଡ଼ା ଛୁଇଁ
ଜଉ ଜମୁଥିଲେ ବଣଇ ଯତେ କ
ଜମୁଚି ଅସୁର ଉଇଁ ।
ବାଗରେ ପୋଖରୀ, କୁଅ
ହାଡ଼ରୁ ମାଉଁସ ଝରି ପଡ଼ଇ ଗୋ
ଦେଖିଲେ 'ଜଉ' ଲୁହ ।



ଅଗଡ଼, ବଗଡ଼, ଝାଉଁଳ ଝଟା
ମାଡ଼ି ମାଡ଼ି ଯାଏ କଖାରୁ ଲଟା ।
କଖାରୁ ପାଉଁଳ ପାଳର ଶିକା
ଗାଆଁକୁ ଆସିଚ ଖେଳନା ବିକା ।
ଖେଳନାକୁ କିଣି ପଇସା ପକା
ତାଙ୍କ ଘର ପୁଅ ନାକ ସୋଡ଼କା ।
ନାକ ପୋଛୁ ପୋଛୁ ହେଲାଣି ଘାଆ
ଡାକତରଖାନା ସହଳ ଯାଆ ।
ମଲମ ଟିକିଏ ଲଗେଇ ଆ ଆ
ଭଲ ହୋଇଯିବ ନାକର ଘାଆ ।



ଆଳୁ ଖଇତା କ ସାରୁ ଖଇତା ଗୋ
କେଜେମା ବସିବେ ଖାଇ
ମୋ କୁନ ପିନ୍ଧିଲେ ଝୁମ୍‌କା ପାଉଁଜ
ବାଜିବ ଝୁମୁରୁ ଝାଉଁ ।
କୁନ ନାଇଥିବ ସରୁ କଜଳ ଗୋ
ଝଟକୁ ଥିବ ତା' ଆଖି
ଗହ୍ଣା ପୁନଅଁରେ ଭାଇଙ୍କ ହାତରେ
ବାନ୍ଧିଦେବ ସିଏ ରାଖି ।
ମିଠା ଖୋଇଦେବେ ଭାଇ
କହିବେ ମୋ ଗେହ୍ଲା ଭଉଣୀଟି ଭଲ ଆଉ ଜଣେ କେହି ନାହିଁ ।



ଲଟ୍ଟୁ ଯାଉଥିଲା ନଈକୁ ଗାଧୋଇ
ମୁଁ ଚାହିଁଥିଲି ବାଟ
ଆସିବା ବେଳ ତା' ଉଚ୍ଛୁର ହେଲା ଲୋ
ମନ ହେଲା ଛଟ ପଟ ।

ଆଖିରୁ ଝରିଲା ଲୁହ
ଯୁଆଡ଼େ ଚାହିଁଲି ସେଆଡ଼େ ଦିଶିଲା
ମୋ ପୁଅ ସୁନ୍ଦର ମୁହଁ ।



ବାଡ଼ିରେ କଖାରୁ, ଲାଉ
ନେଉଳ ବିଲୁଣ ଶେଉଳ ମାଛଲୋ
କାଉ କରୁଅଛୁ ଖାଉ ।

କାଉର ଦେହଟି କଳା
ହରିଣ କାଟୁଚି ପାଚିଲା ଧାନ ଲୋ
ଭାଲୁ ବୋହୂକଏ ହଳା ।



ଟଗର ଫୁଲଟି ଦିଶଇ ଧଳା
'ଜଗୁ' ପିଲଟିଟି କଜଳ କଳା ।

ନାଲି ଖଡ଼ିଧରି ଲେଖୁଚି ସିଏ
ପାଠରେ ତାହାକୁ ପାରିବ କିଏ ? ।

ହଳଦିଆ ପ୍ୟାଣ୍ଟ୍ ନେଳିଆ ଜାମା
କିଣି ଦେଇଛନ୍ତି ତାହାର 'ମାମା' ।

ନେଳି ମୁଣିଟିକୁ ହାତରେ ଧରି
ନଇତ ଯାଏ ସେ ଇସ୍କୁଲ ପଢ଼ି ।

ଶାଗୁଆ ରଙ୍ଗରେ ଆଗୁଆ ହୋଇ
ଚତର କରଇ ପୋଟଳ, ପୋଇ ।



ଉଡ଼ିଗଲା ଗେଣ୍ଡାଳିଆ ଝାଡ଼ିଦେଲା ପର
କୁନ ଝିଅଟିର ମୋର ବଲେଇଙ୍କ ଡର ।
ଦେଖି ଦେଲେ ବଲେଇ
ଉଠେ ସିଏ ଚଲେଇ ।

କେଜେମାଆ କୋଳେ ବସି କାନ୍ଦେ ହୋଇ ଗେହ୍ଲେଇ
କେନେ କହନ୍ତି କୁନି ଲୋ ! ଏଡ଼ିକ ତୁ ଫୁଲେଇ ।
ମିଛଟାକୁ ଏଡ଼େ ପାଟି ଦେଉଅଛୁ ମେଲେଇ ।
ବଲେଇ ତୋ କାନ୍ଦଶୁଣି ଗଲାଣିଟି ପଲେଇ
ଦେଖିଲୁ କୋଉଠି ଅଛୁ ବଲେଇ ନାଁ ଫିଲେଇ ।”



ନୂଆଧାନ କେଶ କେଶ
ସୁନା ଝିଅକୁ ମୋ କିଏ ମାଇଲା ଲୋ
ଲୁହ ଧାର ପଡ଼େ ଝର ।
କୁନି କାନ୍ଦେ ଭଁ ଭଁ
ଯାଆ ବଡ଼ଭଇ କୁନୀକୁ ନେଇ ରେ
ଦେଖେଇ ଆଣିବୁ ନଈ ।
ନଈରେ ବାଳିଆ ମଲା
ଆମ ଘରଟିରେ ଯେତେକ ମଣିଷ
କୁନିଟି ସବୁର ଗେହ୍ଲା ।



ବାଶଗଛେ ବରକୋଳି
ପଟା ଦୋଳିଟିଏ ଲଗେଇ ଦିଅରେ
ମୋ' ଝିଅ ଖେଳିବ ଦୋଳି ।
ଦୋଳି ଡାକେ କଟ କଟ
ମୋ ଝିଅ ମୁଣ୍ଡରେ ଜରି ଓଢ଼ଣୀ ଲୋ
ଦିଶୁଥିବ ଜକ ଜକ ।



ଚକ ଯାଏ ଗଡ଼ ଗଡ଼
ମିଟୁବାବୁ ମୋର ବଡ଼ ହୋଇଗଲେ
ବିଦେଶକୁ ଯିବ ପଢ଼ି ।
ଆସିଲେ ସେ ପଢ଼ି ପାଠ
ସାନଠାରୁ ବଡ଼ ସବୁର ପାଇଁକ
ଫିଟାଇବ ନୂଆ ବାଟ ।



ଅଗିଣେ ଫୁଟଇ କଇଁ
ରାଗିଲେ, ରୁଷିଲେ ମନେ ରଖିଥାଆ
ଏକା ଏକା ଥିବୁ ରହି ।
କେହି ତୋତେ କୋଳେ ଝୁଲେଇବେ ନାହିଁ
କେହି କରିବେନ କାଖ ।
ଗେଲ କରି କେହି ଚୋକ ଦେବେ ନାହିଁ
ଶୁଣିବେ ନାହିଁ ତୋ ଡାକ ।



ପୋଖରୀ ପାଖରେ ଡାହୁକ ବସାନ୍ତେ
ଗହଳ ଅମର ବଣ
ଛେନାଗଜା, ଯାକ ବିଲେଇ ଖାଇଲା
ମୋ 'ଜଉ' ଖାଇବ କଣ ?
ମୋ 'ଜଉ' ଖାଇବ ଭତ
ମୁହଁ, ହାତ ଧୋଇ
ଭାଇ ସାଙ୍ଗ ହୋଇ
ପଢ଼ିବାକୁ ଯିବ ପାଠ ।



ଧନ ମୋର କାନ୍ଦ ଗଡ଼ି
ଧୂଳି ବାଲି ହୁଅନାଁ
ସରଗର ଚାନ୍ଦ ମାଗି
ରୁଷିକରି ଶୁଅ ନାଁ ।
ତଳକୁ ଆସେନାଁ ଚାନ୍ଦ
ବଡ଼ ହେଲେ ଜାଣିବୁ
ତାରା ସବୁ ଫୁଲ ନୁହେଁ
କେମିତି ତୁ ଆଣିବୁ ? ।

ଅବୁଝା ତୁ ହୁଅନାହିଁ
ମୋ କୋଳକୁ ଆ’ରେ
ଧୂଳି, ବାଲି ଝାଡ଼ିଦେବି
ଭାତ ଦେବି ଖାଆରେ ।



ଆମ ପୁଅର ଜନମ ଦିନ
ହବରେ ବଡ଼ ଭୋଜି
ଭୋଜି ପାଇଁକି ରୋହି, ଭାକୁର
ଆଣିବେ ବାପା ଖୋଜି ।
‘କାନକା’ ହବ ହଣ୍ଡାକୁ ହଣ୍ଡା
ଛଣା ହୋଇବ କାକରା ମଣ୍ଡା ।
ଛେନା ତଅଣ, ବେସର ଶାଗ
ପୋଟଳ ରସା ନ ଥିବ ରାଗ ।
ମିଠେଇ, ଖଜା ଯାହାକୁ ଯେତେ
ଯେତେ ଖାଇବ ମିଳିବ ସେତେ ।
ଖିଆ, ପିଆର ଲାଗିବ ଧୁମ୍
କେତେ ରଙ୍ଗର ଜଳିବ ଡୁମ୍ ।
ପୁଅଟି ହୋଇ ଖୁସି
ଖେଳୁଥିବ ସେ ସାଥିରେ ଧରି
ଟିକଲି, ମୀନା, ଲୁସି ।



ନଈରେ ଖେଳୁଚି ରୋହି
ମୋ ପୁଅ ଖେଳୁଚି
ଖରା ଧାସରେ ଲୋ
ଝାଳ ପଡୁଥିଛି ବୋହି ।
ନାଆ ଗୃଲେ ଥରି ଥରି
ପୁଅ ମୁହଁ କଳା ପଡ଼ି ଗଲଣିଟି
ଖୋଇ ଦିଅ ତାକୁ ଖିସା ।



ଆମର ଝିଅଟି ତଅପୋଇଟିଏ
ଟିକିକେ ସକେଇ ହୁଏ ।
ଭାଇ ଯେବେ ତାକୁ କାଖ କରି ନିଏ
ହସ ଫୁଟେ ତା'ର ମୁହେଁ ।
ଆମର ଝିଅଟି ତଅପୋଇଟିଏ
ବାପାଙ୍କର ଗଣ୍ଠି ଧନ ।
ଯାହା ସେ ଚାହିଁବ ତାହା ଦେବା ପାଇଁ
ବାପା କରନ୍ତି ପଣ ।
ଆମର ଝିଅଟି ଗେଲବସରି
ସେ ମାଆଙ୍କର ଗଳାମାଳି ।
ଆଖି ଆଢୁଆଳେ ରହିଗଲେ ଟିକେ
ଖୋଜୁ ଥାନ୍ତି ଦାଣ୍ଡ ବାରି ।



ଆମର ଗାଆଁର
ବଡ଼ ପୋଖରୀରେ
ଫୁଟେ ନାଲି, ଧଳା, କଇଁ ।
ବଡ଼ ହେଲେ କୁନା,
ଫୁଲ ତୋଳି ଦବ,
ଠାକୁର ପୂଜିବା ପାଇଁ ।
ଜେଜେ ମା କରିଲେ ଠାକୁରଙ୍କ ପୂଜା
କୁନା ଦେଖୁଥାଏ ବସି ।
ଭୋଗଯାକ ସବୁ ହାତରେ ଧରସେ
ଖୁସି ହୋଇ ଦିଏ ହସି ।



ନେଲୀ ଛନ ଛନ
କାଇଁଚ କାକୁଡ଼ି
ପାଚଲେ କାଇଁଚ ମାଳ ।
କୁନା-କୁନୀ ଦୁହେଁ
ନାଚକରୁଥିଲେ
କେତେ ମାରୁଥିଲେ ତାଳ ।
କେତେ ମା ପାଖରେ ବସି
ପାକୁଆ ପାଟିରେ ପାନ ଖାଉ ଖାଉ
ଗଡ଼ୁଥିଲେ ହସି ହସି ।



ଖେଳ ପଡ଼ିଆରେ ଖେଳ ପଡ଼ିଆ ।
'ଜଗୁ' ଭଲପାଏ ନାଲି ନଡ଼ିଆ ।
ଜାଣି ନାହିଁ ସିଏ ଗଛରେ ଚଢ଼ି
ଚଢ଼ୁ ଚଢ଼ୁ କାଳେ ଯିବଟି ପଡ଼ି ।
ଆ'ରେ ଗଛ ତୁ ତଳକୁ ନଇଁ ।
ମୋ 'ଜଗୁ'କୁ ଯାଆ ନଡ଼ିଆ ଦେଇ ।
ନଡ଼ିଆ ଖାଇ ସେ ମାଡ଼ବ ଖେଳ
ପଢ଼ି ବସିଯିବ ବଢ଼ିଆ ବେଳେ



ତୋଳି ଦେବ ତୋତେ କାକୁଡ଼ି କଷି ।
ଆ'ରେ ମୋ କୋଳେ ଖାଇବୁ ବସି ।
ଅଝଟ ହୁଅନା କାନ୍ଦ
ଖିରି ମୁଁ ରଖିଚି ରାନ୍ଧ ।
ଚାମଚରେ ତତେ ଦେବି ଖୁଆଇ ।
ଝୁଲେଇ ଝୁଲେଇ ଦେବ ଶୁଆଇ ।
ଉଠିଲେ ଖେଳିବୁ ଯାଇ ।
ସାଥି ପିଲା ମେଳେ ଭଲ ପିଲା ହୋଇ
ମାଡ଼, ଗୋଳ ହେବୁ ନାହିଁ ।



" ଭାତ ଡାଲି, ଶାଗ, ତିଅଣ, ଭଜା
ଖାଇବୁ ଆ' ମୋ ରାଇଜ ରଜା ।
ଟିକି ଟିକି ଗୁଣ୍ଡା ଦେଉଚି କରି ।
ଖାଇ ଦେଏ ତୋର ହାତରେ ଧରି,
ନହେଲେ ତୋତେ ମୁଁ ଖୁଆଇ ଦେବି,
ଖାଇ ସାରିଲେ ତୁ କାଖକୁ ନେବି ।



'ଜଉ' ଯେବେ ଯିବ ମାମୁଁ ଘରକୁ ଲୋ
ମାଇଁ ନେବେ କୋଳ କରି,
କେତେ ପିଠା, ମିଠା, ଖିରି, କାକରା ସେ
ବାଢ଼ି ଦେବେ ଥାଳିଭରି ।
'ଜଉନା'' ବସିବ ଖାଇ ।
"ଏଇଟାକୁ ଖାଆ, ସେଇଟାକୁ ଖାଆ କହୁଥିବେ ବସି ଆଇ"



ଶାଳି ପତରର ଠୋଲା ।
ମୋ ପୁଅ ଖାଉନ ଭାତ, ଡାଲି, ମାଛ,
ଦେବି ତା'କୁ ରସ ଗୋଲା ।
ଛେନା ଗଜା, ସରପୁଳି ।

ରଖିଦେବ ଆଣି ତାହାର ଆଗରେ
ଖାଇବ ସେ କାହ୍ନ ଭୁଲ ।
ଅବୁଝା ନୁହେଁ ମୋ ପୁଅ,
ମିଠା, ପିଠା, ଫଳ, ଖାଇବାରେ ଆଉ
କେହି ତାହା ସମ ନୁହେଁ ।



କୋଇଲି ମାଉସୀ କାଉ ।
ଦୁଧ, ଘିଅ, ଚିନି, ଗୋଳାଇ ଆଣିଛି
ଖାଇ ଦେଏ ଟାଉ ଟାଉ ।
କାଉର କାଳିଆ ପର ।
ସବୁଯାକ ଭାତ ଖାଇ ଦେଲେ ତତେ,
ସଭିଏ କହିବେ ଭଲ ।
ଭଲ ପିଲା ଯିଏ ହବ ।
ବଡ ଭାଇ ଗଲେ ବଜାରକୁ
ତା'ଙ୍କୁ ଚକ୍‌ଲେଟ ଆଣି ଦବ ।



ବହିଲା ଚଇତ ବାଆ
ଆମ୍ବ ନସି ଭଙ୍ଗା ସଜ-ପଖାଳ ରେ
ପେଟପୂରାଁ କରି ଖାଆ ।
ପଖାଳ ସାଙ୍ଗକୁ ଭଜା
ପିଆଜ ଲଗେଇ ଖାଉଥିଲେ ଧନ !
ସବୁଠୁ ଲାଗଇ ମଜା ।



ବିଲରେ କଙ୍କଡ଼ା ଗାତ
କୁହୁଡ଼ି, କାକର, ଶୀତ ଆସିଛରେ
ଖାଆନାଁ ପଖାଳ ଭାତ ।
ଗରମ ଭାତରେ ଡାଲି
ଗୋଳେଇ ଦଉଚି, ତରକାରୀ ସାଙ୍ଗେ
ଥାଳି କରଦେଏ ଖାଲି ।



ଘିଅ ପୁରୁ ପୁରୁ "ଖେଟେଣ୍ଡ଼ି ଭାତକୁ
ବାସନା-ଗୁଲ୍ଲଳ ଝିଙ୍ଗ
ଥର ଥର କରି ଖାଉଥିଲେ "ଜାଉ"
ହସୁଥାଏ କରି କରି ।
ବୋଉ ବାଢ଼ିଦେଲେ ଭାତ ଡାଲି ଆଉ
ଚଙ୍ଗୁଡ଼ି ମାଛର ଝୋଳ
ମୁଁହ ହାତ ଧୋଇ ତର ବର ହୋଇ
'ଜାଉ' ଖାଇବସେ ମୋର ।
(କଣ୍ଟା ନ ଥିବା ହେତୁ ଶ୍ରେଷ୍ଠ ପିଲମାନେ ଚଙ୍ଗୁଡ଼ିକୁ ଭଲପାଆନ୍ତି)



ଅରୁଆ ଭାତକୁ ବହଳ ଡାଲମା
କୋଶଲା ଶାଗକୁ ବଡ଼ି
ବାଢ଼ି ଦେଉଚ ମୁଁ ବେଗେ ଖାଇ ଦେଏ
ଯିବି ପଢ଼ି ପାଠ ମଢ଼ି ।
ମଠେଇ ହୋଇଲେ ଡେରି ହୋଇଯିବ
ପଛରେ ବସିବି ଯାଇ
ଆଗ ଯିବା ପିଲା ଆଗେ ବସିଥିବେ
ହସୁଥିବେ ମୋତେ ଚାହିଁ ।



ଗଲା କାଲିଠାରୁ ହଦରେ ତୋହର
ଭରିଛି ହୋଇଚ ଜର
ସାଗୁ କି ବାଲି ତୁ ପିଇ ଦେ'ରେ ଧନ
ଖାଇ ଦେ ଦଉଚି ଫଳ ।
ଅଉଷଧ ନେଏ ଖାଆ
ଦେହ ଭଲ ହେଲେ ଭାତ, ମାଛ, ମାଂସ
ଦେବି ମୁଁ ଖୋଜିବୁ ଯାହା ।



ଖଟା ଝିଆ ମୋ'ର ପୁଅଟି
ଆମ୍ବର ଦେଖିଲେ ଲୁଚ ପାଟି ତା'ର
ଟିକେ ହେଲେ ଥୟ ନୁହଁଟି ।

ଯାଚଲେ ନଖାଏ ଝିଲି, ପୁଲି, ଲଡୁ,
ଭଜା, ଡାଲି, ମାଛ, ଭାତକୁ
"ଆଗୁର ଟିକିଏ ନେ" କହିଦେଲେ
ହସି ସେ ବଢ଼ାଏ ହାତକୁ ।



ଗୁଣ୍ଡୁଚି ମୂଷା ଡାଳରେ ଡେଇଁ ପାଚିଲା ଫଳ ଖାଏ
ଗାତୁଆ ମୂଷା ଚାଉଳ, ଧାନ, ମୁଗକୁ ଭଲପାଏ ।
ଗାଈ ଖାଏ ଘାସ ନଡ଼ା, ଶୁଆ ଖାଏ ଧାନ
ମାଛ, ମାଉଁସ ଦୁଧ ଘିଅରେ ବିଲେଇଟିର ମନ ।
ବାଲୁଆ ନନା କଙ୍କଡ଼ା ଖୋଜି
ବିଲ ମାଳରେ ବୁଲେ
ରାତି ହୋଇଲେ ପିଜୁଳି ଖାଇ
ବାଦୁଡ଼ି ଡାଳେ ଝୁଲେ ।
କୁକୁଡ଼ା ଛୁଆ, ଚଢ଼େଇ ଛୁଆ,
ଖାଏ ଚାଉଳ ଖୁଦ
ମୋ ଜାତୁ ଖାଏ ଭାତ-ଡାଲି
ପିଏ ଗଜର ଦୁଧ ।



ନୁତୁରୁ, ପୁତୁରୁ ପାଚିଲା ଆତଟି
ଭାରି ମିଠା ଖାଇବାକୁ
ତୁମରି ପାଇଁକି ଟଙ୍କାଟିଏ ଦେଇ
କିଣି ମୁଁ ରଖିଚି ତାକୁ ।
ପଚିଶ ପଇସା ଦେଇ ମୁଁ ଆଣିଚି
ପାଚିଲା ସପେଟା ଟିଏ
କୁନା, କୁନି ମୋ'ର ତୁମେ ଖୋଇଲେ
ଆଉ ବା ଖାଇବ କିଏ ?
ଖାଇ ଦିଅ ମୋର ଧନ !
ଫଳ ଖାଇ ତୁମ ଦେହେ ବଳ ହେବ
ଖୁସି ବି ରହିବ ମନ ।



ଆମ କୁନା ସୁନା ପୁଅ
କାନ୍ଦେ ନାହିଁ ଜମାରୁ ।
ଖାଇବାକୁ ଭଲପାଏ
ମିଷ୍ଟି, ପୁରି, ଅମାଲୁ ।
ଚଳେ ସିଏ ଗଡ଼େ ନାହିଁ
ମଳି, ଧୂଳି, ହୁଏନାଁ ।
ସୁନା ପୁଅଟିଏ ସିଏ
ରଗି, ରୁଷି ଶୁଏ ନାଁ ।
ଯେତେ ସବୁ ସାଥି ତା'ର
ଠିକ୍ ତାଆ ଭଳିଆ ।
କେହି ନୁହନ୍ତି କାନ୍ଦୁରି ନୁହନ୍ତି ବ କଳିଆ ।

□

ଆଈଙ୍କି ଆମର କହିଲେ ଅଜା
ଘର ସୁଆଦିଆ ତାଳର ଗଜା ।
ତାଳଗଛ ଆଗେ ବାଇଆ ବସା
ବାସି ହୋଇଯିବ ପୋଟଳ ରସା ।
ବାଇ ଚଢ଼େଇରେ ସଅଳ ଆ
କୁନା ସାଙ୍ଗେ ବସି ପେଟେ ତୁ ଖାଆ ।
ମାଆ ଆଗେ ଯାଇ କହିବୁ ତୋର
କୁନା ଛୁଡ଼ୁନାହିଁ ଜମା ମୋ କୋଳ ।

□

ଛେନାଗଜା, ଲଡ଼ୁ ଖାଇବା ପାଇଁକି
କୁନାକୁ ଲାଗଇ ମଜା
ଦୋଳ ଯାତରାରୁ କଣିକର ତେଣୁ
ଆଣିଥିଲେ ତାକୁ ଅଜା !
ମାଆ କରଥିଲେ
ଆରଷା-କାକର
ଚକୁଳି, ଚତୋଉ ଖିରି ।
ଅଜାଙ୍କ ସାଥିରେ
ଖାଉଥିଲା କୁନା
ସବୁକୁ ଏକାଠି କରି ।

□

ମୋ'ର ପୁଅକୁ ଦଅରେ କଦଳୀ
ତା'ର ଚେହେରାଟି ଯିବ ବଦଳି ।
ପୁଅ ଖାଇଦେଇ ଆମ୍ବ
ସିଏ ପାଠରେ ହୋଇବ ଆଗ ।
ପିଜୁଳି ଖାଇଲେ ପୁଅ
ଭାରି ଟାଣୁଆ ହବ ତା' ଦନ୍ତ ।
ଖାଉ ସେ ପଇଡ଼, ନଡ଼ିଆ
ତା'ର ଅକଲ ହୋଇବ ବଢ଼ିଆ ।
ପଣସ, ସପେଟା, ଆତ
ଖାଇ ବାଘକୁ ମାରିବ ନାତ ।
ଦେଲେ ଫୁଟି ତରଭୁଜ ଖାଇ
ତାକୁ ଗରମ ବାଧିବ ନାହିଁ ।



ଖଡ଼ା କଆଁଶିଟି ଝାଉଁଳ ପଡ଼ିଚ
କୂଅପାଣି ମଡ଼େଇଲି
କଅଁଳ କାକୁଡ଼ି ରସରସିଆ ଲୋ
ପୁଅପାଇଁ ଛଡ଼େଇଲି ।
ତୋଳିଲି କୋଶଳା ଶାଗ
ଖେଳି ଖେଳି ପୁଅ ହାଲିଆ ହେଲଣି
ଖୋଇଦେବି ତାକୁ ଆଗ ।



ବଇଶାଖ ମାସ
ରଡ଼ନିଆଁ ପରି
ଖରାଜାଳି ଦିଏ ଦନ୍ତ ।
କୁନା, କୁନି ମୋର
ଝାଉଁଳ ଗଲେଣି
ଛେନା ପଣା ତାଙ୍କୁ ଦିଅ ।
ଦିଅ ବା ପଇଡ଼ ପାଣି
ଆମ୍ବ ପୋଡ଼ିଦେଇ
ସରବତ୍ କରି
ପିଇବେ ସେ କଥା ମାନି ।



ଆତ ପତର କ
ଘିତ ପତର
ନେଉଳ ମାଛୁଚ ଡିଆଁ ।

ଶୋଇ ଉଠିଲଣି ବାବୁନ୍ ଆମର
ଖୋଇଦଅ ଜଳଖିଆ ।

କ୍ଷୀର-ଚଣା ପାଉଁରୁଟି ।
ଖାଉଥିଲେ ଆମ ବାବୁନ୍ ମୁଁହରେ
ହସ ଉଠୁଥିବ ଫୁଟି ।



ଜଉକୁ ଭୋକ ଜବର ।
ଇଡ଼୍‌ଲି, ଦୋସା, ସମ୍ବର
ସଜ୍ଜିଲ ଦଅ ବାଢ଼ି ।

ହାତକୁ ଧୋଇ ବସିବ ସିଏ
ଚକାଟି ଦେଇ ପାଶ ।

ଟିକି ହାତରେ ପାଟିକି ନବ ।
ଟିକି ଦାନ୍ତରେ ଚୋବେଇ ଦବ ,
କଅଁଳ ଜିଭ ଜାଉରେ ସବୁ
ପେଟକୁ ଦବ ଠେଲି ।

ଖାଇ ସାରଲେ ଜେଜେ ମା ସାଙ୍ଗେ
ଖେଳିବ ବସି ବେଳି ।



ଗୁଣ୍ଡୁଚି ମୂଷା, ଗୁଣ୍ଡୁଚି ମୂଷା କାକୁଡ଼ିଟିଏ ଖା ।
ଖୁପୁରୁ ଖୁପୁ ଡେଇଁ ଡେଇଁକା
ଗଛକୁ ଚଢ଼ି ଯାଆ ।

ଗୁଣ୍ଡୁଚି ମୂଷା ମୋ ‘ଜଉ’କୁ ପିଜୁଳିଟିଏ ଦେ ।
ସିଏ ଖାଉ ତୋ ପିଜୁଳି
ତୁ’ଟା ଘତ ତାଟିଆ ନେ ।

ଭାତ ସାଥିରେ ବାଢ଼ି ଦେଇଛି
ଛଅଣ, ଡାଲି-ଭଜା
ଡାଳରେ ବସି ଖୁସିରେ ଖାଅ
ଲାଗିବ ଭାରି ମଜା,



ଆ'ରେ ମୋ ଧନ ସହ୍ଲ ଆ
ମୋ କୋଳରେ ବସି ଭାତ ତୁ ଖାଅ ।

ଖାଇସାରି ଶୁଅ ଧନଟି ମୋର
ଶେଯରୁ ଉଠିବୁ ହୋଇଲେ ଭୋର ।

ପୂରୁବ ଆକାଶେ ସୂରୁଯ ଉଇଁ
ଖରା ହାତେ ତୋତେ ଦେବେଟି ଛୁଇଁ ।

ଫୁଲ ସବୁ ତୋତେ ଡାକିବେ ଆସ
ଡାକିବ ସାଗୁଆ କଅଁଳ ଘାସ ।

ଗଛୁ ପଡ଼ୁଥିବ କାକର ଖସି
ସବୁରିକୁ ଚାହିଁ ଦବୁ ତୁ ହସି ।



ବେଙ୍ଗୁଲି ବେଙ୍ଗୁଲି ଦେଏ ଲୋ ପାଣି
ମାଆ ରଖିଚନ୍ତି କାକରା ଗୁଣି ।

ବାପା ଆଣିଚନ୍ତି ବାଦାମ ଭଜା
ଜେଜେ କିଣିଚନ୍ତି କମିକି-ଗଜା ।

ଖୁଡି ଭାଜିଚନ୍ତି ଗରମ ମୁଢ଼ି
ମୁଆ ବଳିଚନ୍ତି ଜେଜେମା ବୁଢ଼ୀ ।

ତୁ ମୁଁ ଦିହେଁ ଖାଇବା
ଖେଳ ବୁଲି ଗୀତ ଗାଇବା ।



ଆମର ମୁନ୍ନା ପକ୍କା ସୁନା
ଖାଏ ନାଁ ଜମା ଭାତ
ରସଗୋଲ୍ଲି ଯାଚଲେ ମାଆ
ବଢ଼ାଏ ହସି ହାତ ।

ଆମର ମୁନ୍ନା ପକ୍କା ସୁନା
ଶିକ୍ଷକ ଭଲ ପାଏ
ବାଦାମ ପକା ସିମେଇ ଖିରି
ବେଲାଏ ଧରି ଖାଏ ।

ଆମର ମୁନ୍ନା ପକ୍କା ସୁନା
ଖାଏ, ପଢ଼େ, ଖେଳେ
ଯେତେ ବେଳେ ଯାହା କରିବା କଥା
କରଇ ସେତେବେଳେ ।



ଆମ ମିଣ୍ଟୁ ଦାନକର ଖାଇଥିଲା ଅଣ୍ଡା
ଛେନାପୁର ଦହି ଛଣା ମଣ୍ଡା ଦୁଇଗଣ୍ଡା ।
ଗୁର ଗୁରଣ୍ଟା ଚକୁଳି ଯୋଡ଼ା ଯୋଡ଼ା ବରା
ଗୋଟାକୁ ଗୋଟା ଆରିସା ଖିରି ଭଜା ସରା ।
ସବୁ ମିଶି ମିଣ୍ଟୁ ପେଟେ
କଲେ ହସ ଖେଳ
କାନ୍ଦ କାନ୍ଦ କଟିଗଲା
ଆମ ମିଣ୍ଟୁ ବେଳ ।



ଉଠ ଧନ ମୋର ଖୋଲରେ ଆଖି
କାଉ ରାବ ଦେଇ ଗଲାଣି ଡାକି ।
ଗୁଲେ ପଢ଼ିଲାଣି କଅଁଳ ଖରା
ପାଠ ପଢ଼ିବାକୁ ଯିବୁ ତୁ ପରା ।
ବେଗେ ମୁଁହ ଧୋଇ ଦାନ୍ତ ତୁ ଘଷ
ଆସନ ପକେଇ ମୋ ପାଖେ ବସ ।

ବାଡ଼ି ଦେଉଅଛୁ ଖୁସିରେ ଖାଆ
ସାଥି ମେଳ ହୋଇ ଇସ୍କୁଲ ଯାଆ ।



ଡାବଲ ତଳେ ମୂଷାଟି ହୁଏ ଖୁସୁରୁ ଖୁସୁ ଖୁସ୍
ବଣ ଘଇଜେ ହାତୀ ଦଉଡ଼େ ଭୁସୁରୁ ଭୁସ୍ ଭୁସ୍ ।
କୁମ୍ଭୀ କନ୍ଧଲ୍ଲ କୁନା କାନରେ ଫୁସୁରୁ ଫୁସ୍ ଫୁସ୍
ବରଷା ପାଗେ ଗରମ୍ ମୁଡ଼ି ଖାଇବା ମୁସ୍ ମୁସ୍ ।
ଗୋଲେଇ ଦବା ପିଆଜ ତେଲ ଲାଲ୍ ବଲାଡ଼ ଯୁଣ୍
ତା’ ସାଙ୍ଗକୁ ଆହୁରି ମଜା ପକୁଡ଼ି, ବରା, ଠୁସ୍ ।



ପୁଅ କାନ୍ଦୁଥିଲା କଇଁ କଇଁ ହୋଇ
ମାଆ ବୁଝାଇଲେ ତାକୁ
“କାଲି କିଣିନେବ ରଥ ଦେଖେଇବ
ଖାଇ ଦେବ ଟାକୁ ଟାକୁ ।”
ପୁଅ କଲା ଏଡ଼େ ଆଁ
ମାଆ ଖୁଆଇଲେ ପୁଳି ପୁଳି କରି
ବାଡ଼ି ଆଣିଥିଲେ ଯାହା ।



ଧଳା ସର ସର କାଉଁରିଆ କାଠି
ସହଜରେ ଯାଏ ଭାଙ୍ଗି
କଦଳୀକୁ ପୁଅ ଭଲ ପାଉ ବୋଲି
କାନ୍ଧେ ଦେଇଚ ଟାଙ୍ଗି ।
ଭଲ ହୋଇ ଯିଏ ପାଚିଗଲା ପରେ
ଖାଇବୁରେ ମୋର ଧନ
ପାଚିବା ଆଗରୁ ଖାଇବୁ ଯେବେ ତୁ
ପାଟି ହେବ କଷାବଣ ।



ଆଳୁଚପ୍ ଆଳୁଚପ୍
ତତେ ଦେଖି କୁନା ପାଟିରୁ
ପାଣିଗଡ଼େ ଥପ୍‌ଥପ୍ ।
ଖାଇଦେଲେ ରାଗ ଲାଗେ, ଗ୍ଲାଡ ହୁଏ ଦପ୍‌ଦପ୍
ପେଟ ସାର ମୋଡ଼ ହୁଏ ମଥା ହୁଏ କପ୍ କପ୍ ।



ଟିକି ଦାଦା ଗଲେ ବଜାର ବୁଲି
ସାଙ୍ଗେ ନେଇଥିଲେ ଗୋଟିଏ ଝୁଲି ।
ଝୁଲିରେ ପୁରାଇ ଆଣିଲେ ମାଛ
ମାଆଙ୍କୁ କହିଲେ ଜଲଦି ବାଛ ।
ବାଛି ସାରି ମାଆ କରିଲେ ଭଜା
ଦାଦା, ଜଲ୍ଦି ଖାଇ ମାରିଲେ ମଜା ।



ପଇଡ଼ ପାଣିଟି ମଧୁର ଭାରି
ପିଇ ଦେଏ ତାକୁ ଗିଲାସେ ଢାଳି ।
ଖାଇ ଦେଏ ନାଲି ନଡ଼ିଆ
'ଗଡ଼ଗଡ଼ିଆ'ରେ 'ବାଲିଯାତ୍ରା' ହେବ
ଦେଖିବାକୁ ଭାରି ବଢ଼ିଆ ।
ଚୋଫା ଜହ୍ନ ପଡ଼ୁଥିବରେ
ମହାନଦୀ ପାଣି ସଫା ଦିଶୁଥିବ
ନାଆ ଖେଳିବାକୁ ଯିବରେ ।



"ଫଳ ଖାଇଲେ ବଳ ବଢ଼ିବ"
କହିଲେ ଆମ ଅଜା
ପଛୁ ସଢ଼ା ବାସି ଜିନିଷ
ପାଖକୁ କେବେ ନ ଯା ।

ଆଉ କହିଲେ ପାଣିକୁ ଗୁଣି
ପିଅ ମୋ କୁନି, କୁନା
ରୋଗ ତୁମକୁ ଛୁଇଁବ ନାହିଁ
ଦେହଟି ହେବ ସୁନା ।



ଆମ୍ବ ପଛକେ ଖଟା ଲାଗୁଥାଉ
ପଣସ ପଛକେ କଷି ହୋଇ ଥାଉ
ନଡ଼ିଆ ପଛକେ ଗଛ ଅଗେ ଥାଉ
'ଜିତୁ'ର କଅଣ ଯାଉଛି ।
କେକେ ଆଣିଚନ୍ତି
ସେଓ, ନାସପାତି
ସିଏତ ମଜାରେ ଖାଉଚି ।
ବାପା ଆଣିଚନ୍ତି ବେଦେନା, କମଳା
ଖଜୁର, ଅଙ୍ଗୁର କୋଳି ।
ମୋ ଜିତୁ ଖାଉଚି—ଭାଇକୁ ଦଉଚି
ଦୁହେଁ ଖେଳୁଚନ୍ତି ଦୋଳି ।



ଛାତିଆ ଉପରେ ଛାତିଆ ।
ଫସର ଫାଟିଲା କାଛୁ କା' କଲା
ଶେଯ ଗୁଡ଼ ଏବେ ଉଠିଆ ।

ବୁଲ୍‌ଆ କଅଁଳ ଖସ୍‌ରେ ।
କଅଁଳ ଖସ୍‌ଟି ବେଗ ବଇସ୍‌ଗ
ଝାଡ଼ ଝୁଡ଼ୁଦଏ ପସ୍‌ ରେ ।



ହେମାଳ ପବନ ଛୁଇଁଲା ଯେମିତ
ଦାନ୍ତଟା ଉଠିଲା ଶିତେଇ
ଆମ ଟିକି ବାବୁ କାହାକୁ ମାରେନାି
କାହାକୁ ହୁଏନା ଖତେଇ
କାହାଠାରୁ କଚ୍ଛ ଛଡେଇ ଖାଏନା
ମାଆ ଯାହା ଦେଲେ ଖାଏ ।
ଦଣ୍ଟା ବାଜଲେ ଛବବନ୍ଧ ଧର
ଇସ୍କୁଲ ସିଏ ଯାଏ ।



ଆଖୁ ବାଡ଼ ଖର ଖର ।
ବର୍ଷାରେ କୁନା ଓଦା ହେଲୁ ବୋଲ
ହେଲା ତତେ ଏତେ ଜର ।

ଅଉଷଧ ଟିକେ ଖାଇଦେଏ ଏବେ ଜର ତୋର ଗ୍ଭଡ଼ ଯାଉ ।
ମନେ ରଖିଥାଆ ବରଷା ପାଣିରେ
ଓଦା ହେବୁ ନାହିଁ ଆଉ ।



କୁମୀ ଯାଉଥିଲା ଏଣେ ତେଣେ ଗ୍ଭହିଁ
ଇଟା ଝୁଣ୍ଟି ଗଲା ପଡ଼ି ।
କଅଁଳ ନଖଟି ଉଠିଗଲା ତାର
ରକତ ପଡ଼ିଲା ଝରି ।

କହିଲେ ତା ଜେଜେ ମାଆ ।
"ଏଣେ ତେଣେ ଚାହିଁ ଚାଲିବାର ମଜା
ଭଲକରି ଏବେ ପାଆ ।
ଜମାତ ବୁଝିଲୁ ନାହିଁ ।
ଗାଡି କି ମଟର କେତେବେଳେ ତତେ ଧକ୍‌କା ଦବ ଏଥିପାଇଁ ।



ହୀରାକୁଦ ବନ୍ଧ ଛାଡ଼ୁଛି ପାଣି ଲୋ
ନଈରେ ପଡୁଛି ସୁଅ ।
ପିଲାଙ୍କ ଭିତରେ ଭଲ ପଢ଼ିବ ଯେ
ସିଏ ହେବ ସୁନା ପୁଅ ।
ସୁନା, ପୁଅ ସିଏ ମାଡ ଗାଳି ସିଏ
କାହାଠାରୁ ଖାଏ ନାହିଁ ।
ଖେଳି, ବୁଲି, ପଢ଼ି ବେଳଯାଏ ତା'ର
ସବୁରି ମେଳରେ ଥାଇ ।



ବାରଟିଏ ହୋଇ ମୋ ଟିକି ବାବୁ
ବଇରୀ ଦଳକୁ କରିବ କାବୁ ।
ଲଢ଼େଇ କରିବ ଦେଶର ପାଇଁ
କାହାରି ପାଖେ ସେ ହାରିବ ନାହିଁ ।



ଘରଠୁଁ ବାହାର ସବୁ ସଫାକରି
ଶୋଇଥିଲେ ମାଆ ଖୁଡ଼ି ।
ସୁନା ପୁଅଟି ମୋର ଅଳିଆ କରେନା,
ବୁଣି ଦେଇ ଚୂଡ଼ା-ମୁଢ଼ି ।
ଘରେ ଢାଳେ ନାହିଁ ପାଣି ।
ପାଣି ଢାଳିଦେଲେ କାଦୁଅ ହୋଇବ
ଗୋଡ଼ ଖସିଯିବ
ଏକଥା ଅଛି ସେ ଜାଣି'।



ପାରାଦୀପ ଯାଇ ଆମ କୁନା କୁନି
ଦେଖିବେ ଜାହାଜ ମାନ ।
ବିଦେଶରୁ ଆସି ଲାଗିଛି ଯିଏ
କିଏ ବଡ଼ କିଏ ସାନ ।
ସମୁଦ୍ର କୂଳରେ ବୁଲିବେ ସେଠି
ଦେଖିବେ ମାଛର ହାଟ ।
ବୁଲିବୁଲି କରି ମାଛ କିଣି ସାରି
ଧରିବେ ଘରର ବାଟ ।



ଆରେ ଆରେ ଆରେ ଏଇଟି କିଏ ?
ହାତରେ ତାହାର ବନ୍ଧୁକଟିଏ ।
ବୀରର ପୋଷାକ ବୀରର ବେଶ—ଜଗିବ କହୁଛି ଆମର ଦେଶ
ଆରେ ! ଇଏତ ଆମର କୁନିଆଁ
ବଇରି ମାନେ ତ ଦେଖୁ ଦେଖୁ ତା'କୁ
ପଳେଇବେ ହୋଇ ଚୁନିଆଁ ।



'ଜିରୁ' କାନ୍ଦୁଥିଲା ଭେଁ ଭେଁ ହୋଇ
ଜବର କଚଡ଼ା ଖାଇ
ମାଆ କହୁଲେ ତୁ ଯେତେ ମନାକଲେ
ପାଣି ଢାଳୁ କାହିଁ ପାଇଁ ।
ପାଣି ଢାଳି ପୁଣି ତାହାର ଉପରେ
ଡେଇଁ ବାରୁ ଫଚ, ଫଚ
ପଡ଼ିଗଲୁ ତୁହି ମିଛଟାକୁ କାନ୍ଦ
ହେଉ କାହିଁ ସଚ ସଚ ।



ଆଖି ବାଡ଼ି ଖର ଖର
ବରଷାରେ ପୁଅ ଓଦା ହେଲୁ ବୋଲି
ହେଲା ତତେ ଏଡ଼େ ଜର ।

ଅଉଷଧ ଟିକେ ଖାଇ ଦେଏ ଏବେ
ଜର ଛୋର ଗୁଡ଼ ଯାଉ
ମନେ ରଖିଥା ବରଷା ପାଣିରେ
ଓଦା ହବୁନାହିଁ ଆଉ ।



"ଜବର କର ବାଡ଼କୁ ଧର
ଗୋଟିକ ଗୋଟି ପାହାଚ ଚ଼ଲ
ଆ'ରେ ପୁଅ ଆ ।
ନହେଲେ ନାହିଁ ପଡ଼ ଯିବୁଟି କହଲେ ତା'କୁ ମାଆ ।
ଅମାନିଆଁ ଟା ଡେଇଁଲା ଖାଲି ହାତକୁ ଦେଇ ଗୁଡ଼
ଦୋତାଲା ସିଢ଼ି ପାହାଚୁ ଗଡ଼ ଗୁଡ଼ିଲା ଭେଁଏ ରଡ଼ ।
ଟିକି ମଶାଟିର ଟିକି ଶୁଣ୍ଢିଏ ରକତକୁ ନିଏ ଶୋଷି
"ମଶାରି ନହେଲେ ଶୋଇବ ନାହିଁ ମୁଁ କୁନା ହେଉଥାଏ ଦୋଷି" ।



ନା, ନା ନ ମାନିଲା କୁନା ଖାଇଦେଲା
ବାରମଜା ମୁଠା ମୁଠା
ଗତ ଯାକ ତା'ର ପେଟ ମୋଡ଼ିହେଲା
ହେଲା ସିଏ ପକା ଉଠା ।
ହେଲା ବାନ୍ତି ଆଉ ଝାଡ଼ା
ଦୁହେଁଯାକ ତା'କୁ ଶୁଆଇ ଦେଲେକି
ଧାଇଁଲା ଯେ ଗତ ସାରା ।



ମିନ୍ଟୁ ଆଣିଥିଲା ଛେନାଗଜା କଣି
ବାପାଙ୍କ ସାଙ୍ଗରେ ଯାଇ
ଅପାକୁ ଲୁଚେଇ ଥୋଇ ଦେଇ ଥିଲା
ଭୂଆ ସବୁ ଦେଲା ଖାଇ ।
ମୋଡ଼ ହେଲା ସିଏ ଜାନ
ସେଇଦିନୁ ସିଏ ଲୁଚେଇ ରଖେନାଁ
ଖାଇବା ଜିନିଷ ମାନ ।



ଆମ ଦେଶ ଆମ ମା'ଆଟି
କୁନା, କୁନି ଯେବେ ବଡ଼ ହୋଇଯିବେ
ରଖିବେ ତାହାର ନାଆଁ ଟି ।
ଭଜାଘଟିଏ ସେ ଭକ ମାଗୁଥିଲେ
ଫୁଙ୍ଗୁଲା ଥିଲେ ତା' ଦନ୍ତ
'ଜବୁ' କହେ ମାଆ ଥରେ ଯାଉଚ ସେ
ଜାମାଟିଏ ତାକୁ ଦିଅ ।
ଗରମ ଗରମ ଭାତ
ବାଢିଦିଅ ତା'କୁ ଖାଇକରି ତା'ର
ଝାଣ ହେଉ ଗୋଡ ହାତ ।



ବୁବୁ ବେବି ଦୁହେଁ କଳି କରୁଥିଲେ
ମଣ୍ଡା ପିଠାଟିକ ପାଇଁ
କାଉ ଝାମ୍ପି ନେଇ ଛୁ କରି ଦେଲା
କାହାର ହୋଇଲା ନାହିଁ ।
ଆଉ ଆଣି ଦେଲେ ମାଆ
କହିଲେ "ଏଥର କଳି କର ନାହିଁ
ଘରେ ବସି କରି ଖାଆ" ।



ପାଣି କାଦୁଅରେ ଗୋଳେଇ ହୁଏ ଯେ
ଦେହ ତାର ହୁଏ ମଳ
ଗୋରା ତକ ତକ ରୂପଟି ଦିଶେ ତା
ମଇଁଷିଆ କୋକ ଭଳି ।
ଧାଆ, ବଥ, କାଛୁ ମିଳି ମିଶି ତା'ର
ଦେହରେ କରନ୍ତି ବସା
କଳବଳ ହୋଇ କାନ୍ଦ ଗଡ଼ି ସିଏ
ହେଉଥାଏ 'ଶନି' ଦଶା ।



ଗଛରୁ ପତର ଝଡ଼େ
ହେଲ ବୁଢ଼ଗଲେ ଆମ ପୁଅ ପାଠ ପଢ଼େ ।

ପୁଅ ପଢ଼ା ଧେଖି ଟିକି ଭାଇ ତା'ର
ଛବି ବହି ଖୋଲି ଦେଇ
କୁକୁର, ବିଲେଇ, ଗାଈ, ଛବି ଦେଖି
ନାଚ ଉଠେ ଥେଇ ଥେଇ ।



'ଜିତୁ, ମିତୁ, ଋତୁ ତିନୋଟି ଭାଇ
କଳିଗୋଳ କେବେ କରନ୍ତି ନାହିଁ ।
ଖାଆନ୍ତି—ପଢ଼ନ୍ତି—ଖେଳନ୍ତି ମିଶି
ସବୁବେଳେ ତାଙ୍କ ମନଟି ଖୁସି ।



ଆମ ଡୁଲୁ ବାବୁ ବାଟ ଚାଲୁଥିଲା ମାଡ଼ି ସେ ନଥିଲା ଯୋତା
କଅଁଳ ଚମକୁ ଫୁଟେଇ ଦେଇ ତା ପାଦରେ ଫୁଟିଲା କଣ୍ଟା ।
ଭେଁ କରି କାନ୍ଦି ବସିଲା ସେଇଠି
ଆଉ ନ ପାରିଲା ଯାଇ
ପାଟି ଶୁଣି ତା'ର ଅଜା ଆସିଗଲେ
ଆସିଗଲେ ପୁଣି ଆଈ ।
କାଖ କରି ଅଜା ଘରକୁ ଆଣିଲେ
ମାଆ ଦେଲେ କଣ୍ଟା କାଢ଼ି
"ଖାଲି ପାଦେ ଆଉ ଚାଲିବନି" କହି
ଡୁଲୁ ହେଲା କାନ ମୋଡ଼ି ।



ଅଠାର କାଠି କି ପିଠାର କାଠି
ଜିତୁ ଚାଷକଲା ଚଉଦ-ବାଟି ।
ଲଗାଇଲା ଆମ୍ବ, ଗୁଆ-ନଡ଼ିଆ
ବଗିଚା ଦିଶିଲା ଭାରି ବଢ଼ିଆ ।
ଚାଷକଲା ମୁଗ, ଗହମ, ଧାନ
ଫଳେଇଲା ସବୁ ପରବା-ମାନ ।
ଘରକୁ ସେ ସବୁ ଆଣିଲା ବୋହି
ସାବାସ୍ କହିଲେ ବାପା-ମା'-ଭାଇ ।



ଗରଜିଲା ମେଘ ବରଷେ ନାହିଁ
ପାଠ ନ ଆସିଲେ ଦେବ ମୁଁ କହି ।
ବେଗେ ବସ ବହି ଧରି
ଦେଖି ଦେଖି ଯାଅ ପଢ଼ି ।
ପଢ଼ିଲେ ଜାଣିବୁ ସବୁ
ନ ପଢ଼ିବୁ ଯେବେ
ମନେ ରଖିଥାଅ
ମୂରୁଖ ଗୋଟିଏ ହବୁ ।



ଏଣିକି ତେଣିକି ବୁହଁାନା ।
ମିଛରେ କରନାଁ ବାହାନା ।
ମନ ଦେଇ ପାଠ ପଢ଼ ।
ଦେଶ ବିଦେଶରେ
ନାଆଁ ତୋ ରହିବ
ଧନେ ତୁ ହୋଇବୁ ବଡ ।



ବାଘ ଅଇଲା ରେ ବାଘ ଅଇଲା
ଆମ ପୁଅ ତାକୁ ଡରେଇ ଦେଲା
ଗୁହଆଁ ରେ ବାଘ ପଲେଇ ଗଲା
ଲୁଚକରି ଯାଇ ବଣେ ରହିଲା ।
ସେ ଦିନୁ ସେ ହେଲା ବଣର ରଜା
ପଶୁ ଯାକ ଖାଇ ମାରିଲା ମଜା ।



ଛେନାଗଜା, ଲଡ଼ୁ, ଦେଲେ ମୋ' ଡୁଲୁବୁ'
ଏକା ପିଏ ଖାଏ ନାହିଁ ।
କହେ ଆମ ସବୁ ଏକାଠି ଖାଇବୁ
ଯେତେକ ଭଉଣୀ ଭାଇ
ଟିକି ଭଉଣୀ ତା ଠୁକୁ ଠୁକୁ ଚାଲି
ପଡ଼ି ଉଠି କାନ୍ଦେ ଯେବେ ।

'ଡୁଲ୍'ଟି ଆମର ଗେଲ କର ତାକୁ
କାଖ କର ନଏ ତେବେ ।



ଧଗ୍ର ଶିଗ୍ରବଣ ଲଗି ରହୁଚ ଲୋ
ବରଷା, ପବନ, ଝଡ଼ ।
ମୋ ପୁଅ ହାତକୁ ସୁନ୍ଦର ଦିଶୁଚ
ପିଲ୍‌ଟ ସାଙ୍ଗକୁ ଖଡ଼ି ।
ଖଡ଼ିଟି ପଡ଼ିଲା ଖସି ।
ପୁର ମୋ'ର ଯିବ ବିଦେଶ ପଢ଼ିଲେ
ବଡ଼ା ଜାହାଜରେ ବସି ।



ଗୋଲା ପାଣି ନେଇ ଅସିଲା ବଢ଼ିଲେ
କୂଲ ମାଟି ଗନ୍ଧ ଦବ ।
ରଙ୍ଗ ଆଉ ତୂଳି କିଣି ଆଣିଦେଲେ
ମୋ ପୁଅ ଆଙ୍କିବ ଛବି ।
ନାଲି, ନେଳୀ, ହଳଦିଆ ।
କଳା ଧଳା ରଙ୍ଗ ଦେଖି ଗୁହ୍ମି ଦେଲେ
ଛବି ହେବ ସୁନ୍ଦରିଆ ।



ଦାଆ ଧରି ଧାନ କାଟି
'କତୁ' ଯେବେ ମୋତେ ପାଠ ପଢ଼ୁଥାଏ
କରେ ନାହିଁ ବଡ଼ ପାଟି ।
ଥରେ ଥରେ କଥା ତା'ର
ଯେତେ ଶୁଣୁଥିଲେ ମନ ହେଉଥାଏ
ଶୁଣିବାକୁ ବାର ବାର ।



ସାତ ସମୁଦର ଲୁଣିଆ ପାଣି
ସେ ପାଣିରେ ବୁଡ଼ିବ ଯିଏଟି ।
କେତେ ନୂଆ ଚଳ, ଗଛ, ମାଛ ସବୁ
ଦେଖିବ, ଆଣିବ ସିଏଟି ।



ଲୁଲୁଟି ଆମର ସୁନା ପୁଅ
ସବୁବେଳେ ତାର ହସ ମୁହଁ ।
ବଡ଼ ସକାଳୁ ସେ ଉଠି ପଡ଼େ ।
ନିଜେ ନିଜେ ତା'ର କାମକରେ ।
ମାଆ ଯାହା ଦେଲେ ଖାଇ ଦେଇ ।
ପାଠ ପଢ଼ି ବସେ ବହି ନେଇ ।
କଳିଗୋଳ କେବେ କରେ ନାହିଁ ।
ଏମିତିଆ ପୁଅ ଅଛି କାହିଁ ?



ମଶା ବେଶି ହେଲେ ମଶାରି ପକେଇ ଶୋଇବା
ମାଛି ବେଶି ହେଲେ ଗରମ, ଗରମ ଖାଇବା
ପିଇବା ପାଣିକି ସିଝେଇ, ଛାଣିକି ପିଇବା
ଲୁଗା ଜାମା ସବୁ ମଇଳା ହୋଇଲେ ଧୋଇବା ।
ସିନେମା, ଟି·ଭି· ରୁ ଭଲ ଭଲ କଥା ଶିଖିବା ।
ନୂଆ ପାଠ ଯାହା ପଢ଼ା ହେବ ମନେ ରଖିବା ।



ମାଳତୀ ଫୁଲର କଢ଼ି ।
ଆମ ପୁଅ ଯିବ ପାଠ ପଢ଼ିବାକୁ
ଧରି ତା ସିଲଟ ଖଡ଼ି ।
ସିଲଟରେ ରଙ୍ଗ-ଗୁଳି ।
ଗୁଳି ଗଣି, ଗଣି, ଗଣିବା ଶିଖିଲେ
ଜମାରୁ ଯିବନି ଭୁଲି ।



ମେଘ ପଡେ଼ ଟୋପି ଟୋପି ।
ଆମର ପୁଅକୁ ଖୁବଭଲ ମାନେ
ଜୋତା-ମୋଜା-ଜାମା-ଟୋପି ।
ଜୋତାରେ ରେଶମ ଫିତା ।
ବଡ଼ ହେଲେ ପୁଅ ବେଶି ପାଠ ପଢ଼ି
ହେବଟି ଜଗତ ଜିତା ।



ଏବେ ସିନା ଝିଅ ଟିକିଟିଏ ବୋଲି
  କୋଳ ମୋର ଛାଡ଼ୁନାହିଁ ।
ବଡ଼ ହେଲେ ତା'ର ବାପାଙ୍କ ଭଳି ସେ
  ଗ୍ଲାଇଡର କରିବ ଯାଇ ।
  ଚଲାଇ ମଟର ଗାଡ଼ି ।
ଝିଅ ମୋର ଯେବେ ଆସୁଥିବ
  ଲୋକ ଦେଖୁଥିବେ ଧାଡ଼ି ଧାଡ଼ି ।



ସାତ ସମୁଦର ତେରନ୍ଦୀ କାଟି
ଯେଉଁ ଜାହାଜ ଆସିବ ଭାସି ।
ପାଠ ପଢ଼ା ସାରି ସେଇ ଜାହାଜରୁ
'ଜଗୁ' ଓହ୍ଲାଇବ ଆସି ।
ବାପା, ମାଆ, କୁନୁ, ଯାଇଥିବେ
ତା'ଙ୍କୁ ସାଥିରେ ଆଣିବା ପାଇଁ ।
ଦେଖୁ ଦେଖୁ ତା'ଙ୍କୁ ମୀନା ଧାଇଁଯିବ
  ଡାକି ଡାକି "ବଡ଼ ଭାଇ"



ଧରିଥିଲେ କାଏ ବେଲୁନ, ବଲ୍
ଛାଏ ନାହିଁ 'ଜଗୁ' ଛାଡ଼େଇ ।
ସାଙ୍ଗ, ସାଥି, ଭାଇ, ଭଉଣୀଙ୍କୁ ସେ
ମାରେ ନାହିଁ ତଳେ ଗଡ଼େଇ ।
ଚକୋଲେଟ୍‌ଟିଏ ମାଗିଲେ କୁନି
ନଖାଇ ଦିଏ ସେ ବଢ଼େଇ
ଘର ପାଖ ବାଲି ଗଦାରେ ବସି
ଖେଳୁଥାଏ ବାଲି ସଢ଼େଇ
ଭାତ ଭଲ ପାଏ ଖାଇବ ପାଇଁ
କାକୁଡ଼ିରେ ଲୁଣ ମଡ଼ାଇ ।
ଲଡ଼ୁ ଖାଇବାକୁ ଜେଜେଙ୍କ ଠାରୁ
ପଇସା ଦିଏ ସେ ଝଡ଼େଇ ।

ମନ ହୁଏ ତା'ର କୁନିକୁ ଟିକେ ଦିଅନ୍ତା କି ପାଠ ପଢ଼େଇ
ପଢ଼ିଲ ଆସିନି କନିକୁ କିଛି ଯାଏ ତେଣୁ ହୁଡ଼ିବଢ଼େଇ ।



ମାଡ଼ି ଆସିଲାଣି ବରଷା ବାଆ ।
କୁନ୍ ମୁନ୍ ମୋର ଘରକୁ ଆ ଆ ।
ଓଦା ହେଲେ ତତେ ଧରିବ କାଶ
କାଶି କାଶି ହବ ଗଲା ପରାସ ।
ଜରରେ ତୁ ପୁଣି ରହିବୁ ପଡ଼ି
କୁଟା ସବୁ ହବ ଢିହଟି ଝଡ଼ି ।
ଖେଲା ବୁଲା କରି ପାରିବୁ ନାହିଁ
ଓଦା ହୁଅ ନାହିଁ ସେଇଥି ପାଇଁ ।



ଧିନ ଘୁରି ମିଣି ସାତ
ପୁଅ ଆସିଲାଣି ପାଠ ପଢ଼ା ସାରି
ମୁଁ ବାଢ଼ି ଦେବି ଭାତ ।
ଭାତରେ ଗୋଳାଇ ଡ଼ାଲି ।
କୋଳରେ ବସାଇ ଖୁଆଇ ଦେବଟି
ଥାଳି ହୋଇ ଯିବ ଖାଲି ।
ଘୁରି ଘୁରି ମିଣି ଆଠ ।
ଇସ୍କୁଲଟିରେ ସବୁରି ଭିତରେ
ପୁଅ ପଢ଼େ ଭଲ ପାଠ ।
ପାଞ୍ଚ ପାଞ୍ଚ ମିଣି ଦଶ,
ଯେତେବେଳେ ଦେଖେ ମୋ ପୁଅ ମୁହଁରେ
ଲାଗି ରହିଅଛି ହସ ।
ଛଅ ଛଅ ମିଣି ବାର
ଅଜା ଆଇଙ୍କର ଗେଲ ବସର ସେ
ମାଆଙ୍କର ଗଳାହାର ।



ଆମ ପୁଅ ଯିବ ଉଡ଼ାଜାହାଜରେ ଉଡ଼ି ।
ଗୁହିଁ ଥିବେ ତାକୁ ଜେଜେ, ଜେଜେମାଆ ବୁଢ଼ୀ ।
ବାପା, ବୋଉ-ଦାଦା ଖୁଡ଼ୀ ।

ଦୂର ବଦେଶେ ସେ ପାଠ ପଢ଼ିବ ।
କେତେ ନୂଆ ନୂଆ କଥା ଜାଣିବ ।
ଘରକୁ ଆସିବ ଫେର ।
ଦେଖିବାକୁ ତା'ଙ୍କୁ ଗାଆଁ ଗୋଟାଯାକ
ସଭିଏଁ ପଡ଼ିବେ ଘେର ।



ଖରା ମାଆ ଖରା ଦେଏ
କାଦୁଅ ବାଟ ଶୁଖେଇ ଦେଏ
ବରଷା ଯାଉ ସର ।
ଆମର ପୁଅ ଇସ୍କୁଲ ଯିବ
ସିଲଟ, ବହି ଧର ।



ବଣି ଚଢେଇରେ ବଣି ଚଢେଇ
ଆ 'ଜଗୁ' ତତେ ଦେବ ପଢେଇ
ମୁଁ କିଣି ଦେବି ବହି ସିଲଟ ।
ପାଠ ପଢିବୁ ତୁ ନକର ମଠ ।
ପଢ଼ିଲେ ବହୁତ କଥା ଜାଣିବୁ ।
'ଜଗୁ' ସାଙ୍ଗ ହୋଇ ଗୀତ ଗାଇବୁ ।
ଖେଳିବୁ ତା ସାଙ୍ଗେ ଦୋଳିରେ ଝୁଲି ।
ଦୁହେଁ ଯାକ ଯିବ ଯାତରା ବୁଲି ।



କ ଆକାର କା, ଖ, ଅକାର ଖା
ସିଲଟ, ଖଡ଼ି-ବହିକୁ ଧର
ଇସକୁଲକୁ ଯାଆ ।
କ ଇକାର କି, କ, ଉକାର କୁ
ଚଞ୍ଚଳ ଚାଲ ବରଷା ଆସେ
ପବନ ବହେ ସୁଁ ।
କ ଏକାର କେ, କ, ଓକାର କୋ
ସାଥି ମେଳରେ କେଉଁଠି କେବେ
ହବୁନି ଘୋ ଘୋ ।

କ ଅଇକାର କୈ, କ ଔକାର୍ କୌ
ମନ ଲଗାଇ ପାଠ ପଢ଼ିଲେ
'ସୁନା'ଟି ହବୁ ତୁ' ।
ଝିକ ଚଢ଼େଇରେ
ଶୁଣ୍ ମୋ କଥା
କିଣିଦେବି ତତେ ରେଶମି ଛତା,
ଖାଇବାକୁ ଦେବି ପାଚିଲା ତାଳ
ନାଇବାକୁ ଦେବି ସୁନାର ହାର ।
ତୋ ସାଥିରେ ମୋତେ ବୁଲେଇ ନେ ।
ଘରଟି ତୋହର ଦେଖେଇ ଦେ ।
ତୋ ଭଳି ଉଡ଼ିବା ଶିଖେଇ ଦେ ।



ସୁଝ ପାହୁ ଙ ଯବେ ସଝିଲା ହବ ।
ସ୍କୁଲେ ବସି କାହୁ କା' ସବବ ।
ବଗିଚ୍ଚ ହୋଇବ ଫୁଲରେ ଭରା ।
ସ୍କୁଲରୁ ଗଡ଼ିବ କଅଁଳ ଖରା
ଖରା ନ ପଡ଼ୁଣୁ ଉଠିବ ଯିଏ ।
ତାଆ ଭଳି ଆଉ ହୋଇବ କିଏ ? ।



ହାପୁଡ୍ତୁ, ତାପୁଡ୍ତୁ, ଧୁଡ଼୍ଙ୍କ
କୁକୁଡ଼ାଟି ହେଲା କୁଡ଼୍ଙ୍କା ।
ଅଣ୍ଡାରୁ କଲା ଛୁଆ ।
ପାଞ୍ଚଟି ଛୁଆ କୁଲୁରୁ ବୁଲୁ
ଗୋଟିଏ ନେଲା ଭୁଆ ।
ରହିଲେ ଆଉ ଚାରି ।
ବୁଲିଲେ୍ ଘର, ବାଡ଼ି
ମାଟିଆ ଚଲ କୋଉଠି ଥିଲା
ଗୋଟିଏ ନେଲା ମାରି ।
ଆଉ ରହିଲେ ତିନି ।
ନାଚିଲେ ଧିନି-ଧିନି ।

ଗୋଟିକୁ ନେଲା ଅଜଣା ରୋଗ
ନ ହେଲା ରୋଗ ଚିହ୍ନି ।
ଦୁଇ ରହିଲେ ଆଉ ।
ଗୋଟିଏ ଗଲା ଶାଉ ଖାଉ ।
ଗୋଟିକୁ ନେଇ କୁଆଡ଼େ କାହିଁ
ପଳାଇ ଗଲା କାଉ ।
ରହିଲା କେମା ଏକ୍ ।
ଦେଖ୍ ତାକୁ ଦେଖ୍
ଟେବୁଲଉପରେ ମନ ମଉଜେ
ଖାଉଚି ବସି କେକ୍ ।



ଏକ କେ ଏକ—ପଢ଼୍ ଆଉ ଲେଖ୍
ଏକ ଦୁଣେ ଦୁଇ—ଚୁଆଁ ଆଉ ଚୁଇଁ ।
ଏକ ତିନି ତିନ୍—ବଜାଉ ଥିଲେ ବିନ ।
ଏକ ଚଉ ଚ୍ୟାର—ଖେଳ ହେଲା ଘର
ଏକ ପନ୍ଚ ପାଞ୍ଚ—ଲଗାଇ ଦେଲେ ଅଞ୍ଚ ।
ଏକ ଶୋ ଛଅ—ପିଠା କଲେ ନଅ ।
ଏକ ସତା ସାତ୍—ଧୋଇଲେ ମୁଁହ ହାତ ।
ଏକ ଅଷ୍ଟା ଆଠ—ଖାଇ ପଢ଼ିଲେ ପାଠ ।
ଏକ ନୁଆ ନଅ—ସୁନା ପୁଅ-ଝିଅ ।
ଏକ ଦଶା ଦଶ୍—ସବୁବେଳେ ହସ ହସ୍ ।



# ଶୁଆଇବା

ବହଳ ଶେଯକୁ ଝାଡ଼ିଝୁଡ଼ି ଦେଇ
ବିଛଣା କରିଚି ତୋର ।
ହାଇଟିଏ ମାରି ଆଖିବୁଜା ଦେଇ
ଶୋଇପଡ଼ ଧନ ମୋର ।
ବାର ପଛ ଆଡ଼େ ପିଜୁଳି ଗଛରେ
ଚଢ଼େଇ ଗଲେଣି ଶୋଇ
ତୁ ଏବେ ଶୋଇଲେ କାଲି କିଣି ଦେବି
ତୋ ପାଇଁ ମୁଁ ନୂଆ ବହି ।



ଘଣ୍ଟ ଦି ପହର ଜଗୁଆଳି ଡାକେ
"ହୁସିଆର ହୁଅ ଭାଇ" ।
ବଡ଼ଠାରୁ ସାନ ସବୁ ଶୋଇଲେଣି
ତୋ ଆଖିକି ନିଦ ନାହିଁ ?
ତୋହର ପାଇଁ ମୁଁ ଚେଇଁ ରହିଛିରେ
ନିଦ ବିନା ଆଖି ପୋଡ଼େ
ଝୁଲୁ ହାଲି କରି ଝୁଲାଉଚି ତୋତେ
ଶୋଇ ପଡ଼ ମୋର କୋଳେ ।



ଶୋଇ ପଡ଼ ଧନ ଶୋଇ ପଡ଼
କାଲିକି ଯିବୁ ତୁ ମାମୁଁଘର
ମାମୁଁ ଘରେ ତୋର ନୂଆ ମାଇଁ
ପିଠା କରୁଥିବେ ସାଇଁ ସାଇଁ
ତୋତେ ଦେଖି ନେବେ କୋଳକରି
ଖୁଆଇବେ ତୋର ପେଟଭରି
ପିନ୍ଧାଇବେ ଜାମା ଜୋତା-ମୋଜା
ଖୁସିହେବେ ଦେଖି ଆଈ, ଅଜା

ଅଜା କହୁବେ ମୋ "ସୁନା ନାତି"
ଆଈ କହୁବେ ମୋ ପାଟ ହାତୀ ।



"ଆଷାଢ଼ ମାସରେ ଫୁଟଇ କଆ
ଶୋଇ ନ ପଡ଼ୁ ତୁ ଚେଇଁଚୁ କିଆଁ ?
ଲୁହ ବହୁ ଆଖି ଗଲାଣି ଫୁଲି
ଗୋରା ମୁହଁ ପଡ଼ୁ ଗଲାଣି କାଳି ।
ତୁନି ହୁଅ ଏବେ କହୁବି କଥା
ଶୁଣି ବୁଜି ଦବୁ ତୋ ଆଖି ପତା ।"



ନିଦ ମାଉସୀ ଲୋ ନିଦ ମାଉସୀ
ମୋ ପୁଅ ପିଠିକି ଦେଏ ଆଉଁସି ।
ତୋ କଅଁଳ ହାତ ଆଉଁସା ପାଇ
ଲୁନୁମୁନ୍ ମୋର ପଡ଼ିବ ଶୋଇ ।
ଶୋଇ ପଡ଼ିଲେ ତୁ ଦେଖିବୁ ରହ
କେଡ଼େ ସୁନ୍ଦର ତା ଦିଶିବ ମୁହଁ ।
ସେତେବେଳେ ଯେବେ ଦେବ ସେ ହସି
ସରଗ-ଶଶି କି ପଡ଼ିବ ଖସି ।



ନିଦ ମାଉସୀ ତୁ ଆ' ଲୋ ଆ'
ମୋ ପୁଅ ଆଖିରେ ନିଜ ଦେଇଯା ।
ତତେ ମୁଁ ଦେବଟି ନଡ଼ିଆ ଫାଳ
ଆତ-ଆମ୍ବ-ଜାମୁ-ପଣସ-ତାଳ ।
ଖାଇବୁ ପିଇବୁ ଆମର ଘରେ
ତୁ ଆସିଲେ ପୁଅ ଶୋଇବ ବଳେ ।
ଶୋଇଗଲେ ସିଏ ନ କର ଡେରି
ସୁଖେ ଚାଲିଯିବୁ ଘରକୁ ଫେରି ।



ଆ'ଲୋ ମାଆ ତୁ ପୁଅକୁ ନେଏ
କୋଳକରି ଆଗେ କାଖେଇ ଦେଏ ।

ବୁଲେଇ ବୁଲେଇ ଖୁଆଇ ଦେଏ
ଝୁଲେଇ ଝୁଲେଇ ଶୁଆଇ ଦେଏ ।
ପୁଅ ମୋ'ର ଯେବେ ପଢ଼ିବ ଶୋଇ
ତୁ ଉଠି ଯିବୁ ସକାଳ ହୋଇ ।
ଭାତ, ଡାଲି-ଶାଗ, ଭଜା ରାନ୍ଧିବୁ
ଖାଇବାକୁ ଆମ ସବୁଙ୍କୁ ଦେବୁ ।
ଡକ୍ଟର ହୋଇଲେ ଉଠିବ ପୁଅ
ତୋତେ ନଦେଖି ସେ ଢାଳିବ ଲୁହ ।



ଶୋଇପଡ଼ ଆରେ ଧନଟି ମୋର
ବାପା ଯାଇଛନ୍ତି ଭୁବନେଶ୍ୱର ।
ତୋ ପାଇଁ ଆଣିବେ କୋଉ ଉଖୁଡ଼ା
ମଗଜଲଡ଼ୁରୁ ଗୋଟିଏ ପୁଡ଼ା ।
ପୁଡ଼ା ଫିଟାଇଁ ତୁ ଦେଖିବୁ ସବୁ
ନଜେଇଁ ତୁ ଖାଇବୁ ଭାଇକୁ ଦେବୁ ।



ନଡ଼ିଆ ଗଛର ତୁଇ
ଝୁଲେଇ ଝୁଲେଇ ଥକି ଗଲଣି ମୁଁ
ତୋ ଆଖିରେ ନିଦ ନାହିଁ ।
ନିଦୁଆ ବୁଢ଼ା ତୁ ଆ'ରେ ଆ
ନିଦ ଗୀତଟିଏ ଗାଆରେ ଗାଆ ।
କୁନା ମୋ' ପଡୁ ଢୁଲେଇ
ପାକଳ ନିଦରେ ଶୋଇଗଲେ ସିଏ
ଯିବୁଟି ତୁହି ପଳେଇ ।



ନିଦ ମାଉସୀ ଲୋ ନିଦ ମାଉସୀ
ନିଦ ଝୁଡ଼ି ଦେଏ ଏଇଠି ଥୋଇ
ଝୁଡ଼ିଟି ଫିଟେଇ ଦେଖିଲେ 'କରୁ'
ହାଇଟିଏ ମାରି ପଡ଼ିବ ଶୋଇ ।

ଘୁଙ୍ଗୁଡ଼ି ମାରେ ସେ ଘୁଡ଼ୁରୁ ଘୁଡ଼ୁ
ପାଣିରେ ହୁଏ ସେ ବୁଡ଼ୁରୁ ବୁଡ଼ୁ ।
ନାକଟିକୁ କରେ ଫୁଡ଼ୁରୁ ଫୁଡ଼ୁ
ଡବା ଖୋଲି କରେ ଖୁଡ଼ୁରୁ ଖୁଡ଼ୁ ।
ବାଦାମ ଚୋବାଏ ମୁଡ଼ୁରୁ ମୁଡ଼ୁ
ଗୁଡ଼ ତା'ର ହୁଏ ଧୁଡ଼ୁରୁ ଧୁଡ଼ୁ ।
ବିଲେଇ ଗୋଟିଏ ଦେଖିଲେ କାହିଁ ।
ନିଦ ମାଉସୀ ଲୋ ନିଦ ମାଉସୀ
ନିଦ ଟୁଙ୍ଗୁଡ଼ି ଦେଏ ଏଇଠି ଥୋଇ ।



ଖାଇବାକୁ ଦେବ ଅଙ୍ଗୁର କୋଳି
ଝୁଲେଇ ଦେବି ମୁଁ ପାଟର ଦୋଳି ।
"ଜନମନ ଗୀତ" ଦେବଟି ବୋଲି
ତୋଳିବ ତୋ ପାଇଁ ପାଚିଲାକୋଳି ।
ଜହ୍ନଟିଏ ପରି ହସି ହସିକା
ଶୋଇ ପଡ଼ ମୋର ସୁନା ଝଡ଼ିକା ।
ଢୁଳ ଢୁଳ ଆଖି ଦେଏ ତୁ ବୁଜି
ଉଠିଲେ ଖାଇବୁ ବୁଧିଆ ସୁଜି ।



ଶ୍ରାବଣ ମେଘ ଅଇଲା
ଫୁଲୁ ଫୁଲୁ ବାଆ ବହିଲା ।
ଟୁପୁ ଟୁପୁ ଟୋପା ପଡ଼ିଲା
ବାହାରର ଖେଳ ସରିଲା ।
ଘର କଥା ମନେ ପଡ଼ିଲା
ଝୁନ୍ ମୁନ୍ ମୋର ଧାଇଁଲା ।
ଭାତ-ଡ଼ାଲି ଭଜା ଖାଇଲା
ନିଘୋଡ଼ ନିଦରେ ଶୋଇଲା ।



ବକ ଶୋଇଲାଣି ବିଲି ଶୋଇଲାଣି
ଶୋଇଲାଣି ଟିକି ହମ୍ବା ।
କଣବଦ ଗୁଣ ତୋ ଆଖିକି କାହିଁ
ନିଦ ଆସୁନାହିଁ ଜମା ?
ମାଣିକ ମାଳରେ ଶୋଇଯା ମୋର
ଗୁଣ ପାଇଗଲେ ହୋଇବ ଖେର ।
ସୂରୁଯ ଦେବତା ଆସିଲେ ଉଇଁ
ଶେଯ ଛାଡ଼ିଦେଇ ଉଠିବୁ ତୁହି ।



ମାଡ଼ ଆସିଲାଣି ବତାସ ଝଡ଼
ଅଝଟ ନହୋଇ ଶୋଇ ତୁ ପଡ଼ ।
ନଶୋଇ ଯେବେ ତୁ ରହିବୁ ଚାହିଁ
ଖେଳନା ତୋ ପାଇଁ ଦେବେନି ଆଈ ।
ଅଜା ମଜାଗପ କହିବେ ନାହିଁ
କାଖ କରିବେନି ତୋ ବଡ଼ଭାଇ ।
ବାପା ଆଣିବେନି ଲଡ଼ୁ, ତୋ ଲାଗି
କାନ ମୋଡ଼ିଦେବ 'ଅପା' ତୋ ରାଗି ।
ନେବେ ନାହିଁ ଦାଦା ତତେ ବୁଲେଇ
ଝୁଣ୍ଡି ଦେଲେ ନାହିଁ ଦୋଳି ଝୁଲେଇ ।



କାହୁରେ କାହୁ ।
ଖେଳି ଖେଳି ପୁଅ ପଡ଼ିଣି ଶୋଇ
ଉଠି ପଡ଼ିବ ତୁ ବୋବାନା ଆହୁ ।
କାହୁରେ କାହୁ ।
ଚୁପ ହୋଇ ଯେବେ ରହିବୁ ବସି
ଖାଇବାକୁ ତତେ ଦେବ ମୁଁ ଯାହୁ
କାହୁରେ କାହୁ ।
ରାହୁ ରାହୁ ହୋଇ ବୋବୋଉ ଥାଉ
କହିଲୁ ଏଥିରେ କି ସୁଖ ପାଉ ?



ନିଆଁ ଭଳି ଧନ ଖରା କାଟୁଛିରେ
ଗୁଇଁ ଗୁଇଁ ଖରାବେଳେ ।
ଝାଳରେ ଗାଧୋଇ ହାଲିଆ ହେଲୁଣି
ସେତିକି ଥାଉ ତୋ ଖେଳ ।
ଆ ଶୋଇପଡ଼ କୋଳରେ ମୋହର
ବିଞ୍ଚି ମୁଁ ଦଉଛି ତୋତେ ।
ମୋ ପୁଅର ଦେହ ଖରା ଧାସରେ ଲୋ
ସିଝି କି ଯାଉଛି ସତେ ।
ଶୋଇପଡ଼ ଧନ ଖରା ମଉଳିଲେ
ଡାକିଲେ ଉଠିବୁ ଯାଇ ।
ଖାଇ ପିଇ ସାରି ଭାଇର ସାଥିରେ
ଖେଳିବୁ ବାହାରେ ଯାଇ ।



ଯା ଟୁଆଁ ଟୁଇଁ ଯାଆ
ଆମ କୁନୁମୁନ୍ ଶୋଇ ପଡ଼ିଲାଣି
ତମ ଘରେ ରହୁଥାଆ ।
ଆମ କୁନ୍‌ମୁନ୍ ସୁନା ପୁଅଟି
ଉଠିଲେ ତୁମ ପାଖକୁ ଯିବ ।
ସାଙ୍ଗ ସାଥି ହୋଇ ସଭିଏ ମିଶି
ଖେଳନା ସବୁକୁ ଧରି ଖେଳିବ ।



ଦେହକୁ ଅଟାଏ ଶୀତ ।
ଘୋଡ଼ିପୁଡ଼ି ହୋଇ ଶୋଇପଡ଼ କୁନି
ଗାଇ ଦଉଛି ମୁଁ ଗୀତ ।
ପାଚିଲା ଧାନର ବିଲ
ତାଙ୍କ ଘର ପୁଅ ଶୋଇଲାନି ବୋଲି
ତାକୁ ନେଇଗଲା ଚିଲ ।
ଶାଗର ପିଢ଼ଣା ଶୁଆ
ଯେ ଗାଆଁର ଝିଅ ଶୋଇଲାନି ବୋଲି
ତାକୁ ନେଇଗଲା ଭୁଆ ।



ଶୋଇ ପଡ଼ିଲାଣି ଛୁଆ ବଳେଇଟି
ଶୋଇଲେଣି ଗଛ ଲତା ।
କୁନ୍‌ମୁନ୍ ମୋର ଶୋଇପଡ଼ ତୁହି
ବୁଜି ଦେଇ ଆଖି ପତା ।
ଶୋଇପଡ଼ ମୋର ଗଳାର ମାଳରେ
କଷା ହେଲାଣି ଆଖି ।
ରାତି ବେଶି ହେଲେ କଥା ବୁଢ଼ାମୂଳେ
ବାଲୁଆ ଉଠିବେ ଭୁକି ।
ଆମ ବାଡ଼ିପଟ ପିଜୁଳି ଗଛରେ
ବାଦୁଡ଼ି ଖେଳିବେ ଦୋଳି ।
କଥା ମାନି ଯେବେ ଶୋଇ ପଡ଼ିବୁ ତୁ
କାଲି ଆଣିଦେବି କୋଳି ।



ଗାଆଁ ପିଲାଙ୍କର ମଉଡ଼ମଣି
ହୀରା, ମାନା, ମଣି, ମାଣିକ ଖଣି
ଚଞ୍ଚଳ ଯାଆରୁ ଶୋଇ
ସବୁକାମ ଯାକ ପଛରେ ପକାଇ
ତତେ ଶୁଆଉଚ ମୁହିଁ ।
ଖଟି ଖଟି ତୋ'ର ବାପା ଆସୁଥିବେ
ଖାଇବେ ସେ ଜଳଖିଆ
ଇସ୍କୁଲୁ ଫେରି ନ ଖାଇଲେ ଭାତ
ପେଟ ହୋଇଯିବ ନିଆଁ ।
ଅପା ତ ତୋହର ଛଅ ବରଷର
କାମ କରି ଜାଣିନାହିଁ ।
କିଏ ତାଙ୍କ କଥା ବୁଝିବ ଧନରେ
ମତେ ନ ଛାଡ଼ିଲେ ତୁହି ।



## ଖେଳ—

ଦୀପାବଳି ଘରପାଇଁ କଣା ହେଲା ଫଟକା
ଢୋ ଢା ଫୁଟିଲାରେ କୁନା ହେଲା ଚାଟକା ।
ଦୁ କାନରେ ହାତ ଦେଇ କୁନା ଗଲା ପଳେଇ ।
କେଜେ ମା କୋଳରେ ବସି ହେଲା ଖୁସି ଗେହ୍ଲେଇ ।
(ଡାଳ ମାରଣେ ଦେଲେ ଜଣେ କାନରେ ହାତଦେଇ
ଦଉଡ଼ି ଯାଇ ଆଉ ଜଣକ କୋଳରେ ବସି ପଡ଼ିବା)



ଆଖି ନାହୁ, କାନ ନାହିଁ ।
ମୁଁ କହୁଦେବ ସାଙ୍ଗ କାହିଁ ?
[ଗୋଟିଏ ପିଲା ଆଖିରେ ପଟି ବାନ୍ଧି ଏଇ ଗୀତ ଗାଇ
ଅନ୍ୟଙ୍କୁ ଧରିବାକୁ ଯିବା)



ଖେଳେଇ ଦେଇ ମୁଁ ଗଦାଏ ବାଲି
ତୋ କାଠି ଗୋଟିକ ଆଣିବ କାଢ଼ି ।
କାଠି ଗୋଟିକ ମୋ'ର
ବାଲି ଗଦାକ ତୋର
(ଜାଣେ ବାଲି ଭିତରେ କାଠି ଲୁଚେଇବ ଆଉ ଜଣେ
ତାକୁ ଖୋଜି କାଢ଼ୁ କାଢ଼ୁ ଏ ଗୀତ ଗାଉଥିବ)



ଦନେଇ' ମନେଇ, ଦୁଇଟି ଭାଇ
ମାଛ ମାରିଗଲେ ପୋଲୁହ ନେଇ
ଶେଉଳ, ଖଜୁର ଗେଣ୍ଡୁ ଧଇଲେ
ଜାଲରେ ପୁରେଇ ବୋହି ଆଣିଲେ ।
(୨ । ୩ ଟି ପିଲାକୁ ଆଉ ଦୁଇଟି ପିଲା
ହାତ ମଝିରେ ରଖି ଧର ଧର ଆଣିବା ଖେଳ)



ଅକଲ, ମକଲ, ଟକଲ ଟାଇଁ ।
ବଇଲ ଗଛର ଦହଲ ଗୁଇ ।
ଗୁଇରେ ଛପର ତାର ।
ରୁଷି ପଳଉଚ ଛଇକା ଭୂଆ
ଧର, ଧର ତାକୁ ଧର ।
(ଗୋଟିଏ ପିଲା ରୁଷି ପଳେଇବା ଓ ଅନ୍ୟ ମାନେ
ତା'କୁ ଗୋଡ଼େଇ ଧରି ଆଣିବାର ଅଭିନୟ )



"କଆ କନ୍ଦଅର ଫୁଲର ତୋଡ଼ା ।
ଆ'ରେ ଆ'ରେ କାଳିଆ ଘୋଡ଼ା ।
ତୋ ଉପରେ ମୁଁ ବସିବି ।
ଟପ୍ ଟପ୍, ଟପ୍ ନ ଦଉଡ଼ିଲେ ତୁ
ଚାବୁକ୍ ପାହାର କଷିବି ।
(ଗୋଟିଏ ପିଲା ଆଣ୍ଠେଇ ଘୋଡ଼ା ହୋଇଥିବ
ଆଉ ଗୋଟିଏ ପିଲା ତା ଉପରେ ବସି ଏହି
ଗୀତ ଗାଉଥିବ )



ଜଣେ— ଅକଲ ମକଲ, ତାକୁଡ଼ି
ବାଡ଼ିରେ ଫଳିଚି କାକୁଡ଼ି ।
କାକୁଡ଼ି ଦୁଇଟି ନେ'ରେ ଖାଇ
କାକୁଡ଼ି ଦୁଇଟି ନେ ।
ଦେଖିବା ଦେଖି କେମିତି ଧରିବୁ ?
ଆଉଜଣେ—"ହାତକୁ ପକେଇ ଦେ'
(ଏହାକୁ କାକୁଡ଼ି ଖେଳ କୁହାଯିବ । ଜଣେ
ଗୀତ ଗାଇ କାଠି, କି ଗୁଳି କି ଗୋଡ଼ିକୁ
ନେବା ପାଇଁ ଯାଚିବ ଏବଂ ଅନ୍ୟ ଜଣକ ହାତକୁ
ପକେଇ ଦେ କହିଲେ ତା ହାତକୁ ପକେଇ ଦେବ । )



ଆମ ଗଛକୁ ଖାଇ ଦେଲା
ପଡ଼ିଶାଘର ଗାଈ ।

ଧରିବା ପାଇଁ ଗୋଡ଼େଇଲାବୁ
ପଳେଇ ଗଲା ଧାଇଁ ।
(୫-୭ ଜଣ ପିଲା ହାତ ଧରି ଧରି ହୋଇ ଗୋଲେଇ ହୋଇ ଠିଆ ହେବେ । ଜଣେ ପିଲା ସେଇ ଗୋଲେଇ ଭିତରେ ପଶି ଟିକିଏ ବୁଲି ତା ପରେ ଡ଼େଇଁ ପଳେଇ ଯିବ । ତା ପଛରେ ସମସ୍ତେ ଗୋଡ଼େଇବେ । )



## କୌତୁକ ଗୀତ—

ଆର ସାଇ ପିଲା 'ଧଡ଼ିଆ'
ଖିରି ଭଲ ପାଏ ନଡ଼ିଆ ।
ଦି'ଚଣ୍ଡା ନଡ଼ିଆ ଖାଇଲେ ବି ତା'ର
ପୁରେ ନାହିଁ ପେଟ-ଗଡ଼ିଆ ।
ଲୋଭ କରି ଖାଇ ରାତିରେ ନ ଶୋଇ
ଧାଇଁ ଥାଏ ଖାଲି ପଡ଼ିଆ ।



କେତେ ଗଲାବେଳେ ବଜାରକୁ ବୁଲି
'ଜଗୁ' କହେ ଟା ଟା ।
ଘରକୁ ଫେରିଲେ କେତେ କହନ୍ତି ତୁ
ଚକଲେଟ୍ ନେ' ଖା" ।
ସଭିଏଁ ଦେଖନ୍ତି ହସି ।
ଦେଖିଲା ବେଳକୁ କେଜଙ୍କ କାନ୍ଧରେ
'ଜଗୁ' ପଡ଼ନ୍ତି ବସି ।



ସାବୁ ଅପୁ ଦୁହେଁ କରିଲେ କଳି ।
ହାଟଟାରେ ହେଲେ ଗଡ଼ା ଗଡ଼ି ।
ଭଲ ଲୋକ ହେଲେ କଥାଁରୁ ଲାଉ ।
ବାଇଗଣ ଆସି ମିଳାଇଲା କାନ୍ଦୁଁ ।
ଶିମ, ବରଗଡ଼ା, ବିନ୍, ବିଲାତି
ହାକର ହୋଇଲା ଗାଜର ଆସି ।

ପହଞ୍ଚିଲେ ପାଣିକଖାରୁ, ମୂଳା
ଶେଷକୁ ପଡ଼ିଲା ଧରମ ଗୁଳା ।
ଘାଣ୍ଟୁ ଢଅଁକୁ ପରବା ପାଇଁ ।
ଯାଇଥିଲା ମୂଳା ହାଟକୁ ଧାଇଁ ।
ଦେଖିଲା ଲଗିଛି ପରବା କଳି ।
ସଭିଙ୍କୁ ଧରାଇ-ପୂରାଇ ଥଳୀ ।
ଆମର ପୁଅ ଗୁରୁଙ୍କ ଆଉ
'ଝୁଲୁଆ' ତା'ର ଗୃହ ।
ଭୁକିଲେ ଯିଏ କହୁଛି ପୁଅ
ଶୁଣରେ ସବୁ
ଝୁଲୁଆ ପଢ଼େ ପାଠ
ଗୁରୁ ଦିଗୁଣେ ଆଠ ।
ପଢ଼ି ପାରିଲେ ଘୁଙ୍ଗୁର ନାଇ
କରିବ ଯିଏ ନାଚ ।



ଡାକ୍ତର ହୋଇ ଜେଜଙ୍କୁ ବସେଇ
'ଜ୍ୱରୁ' ଦେଖି ତାଙ୍କ ନାଡ଼ି ।
"ବଟିକା ଖାଅଟି" କହି ଦେଲା ତାଙ୍କୁ
ପପିନ୍ସ ଦି'ଟା କାଢ଼ି ।
ମାଆଙ୍କୁ କହିଲା ଯାଇ
ଡେରି ଆଉ କର ନାହିଁ ।
ଜେଜେଙ୍କର ପଥ୍ୟ କରିଦିଅ ତୁମେ
ଖାସି ମାଉଁସର ଝୋଳ ।
"ସାବାସ ଡାକ୍ତର" କହି ଜେଜେ ତା'କୁ
ହସି ହସି କଲେ କୋଳ ।



ଜଟିଆ ଚୁଟିଆ ବନ୍ଧୁର କଲେ
ସାଥି ହୋଇ ଦିନେ ହାଟକୁ ଗଲେ
ଜଟିଆ କିଣିଲା ବଲ୍ ।

ବଗକୁ ଛଡ଼େଇ ଚୁଟିଆ ଖାଇଲା
ଦୁହେଁ ହେଲେ ଧର୍ ପର୍ ।



ବିଲେଇ ନାମର ବିଲୁଆ ମିତ ।
ଦୁହେଁ ଯାକ ବନେ ଗାଇଲେ ଗୀତ ।
ନାଚିଲେ ଡେଇଁଲେ ଥରିଲା ଭୂଇଁ
ଭାଲୁ ଖାଉଥିଲା ହରଡ଼ ଛୁଇଁ ।
ଚମକି କହିଲା କିଏରେ ତୁମେ
ବିଲେଇ ବିଲୁଆ କହିଲେ "ଆମେ"



ଦାସଙ୍କ ବାଗରେ କଦଳୀ ପୁଆ
ଦାସେ ପୋଷିଥିଲେ ମାଙ୍କଡ଼ ଛୁଆ ।
ନାଁ ଦେଇଥିଲେ ଶନିଆଁ
"ଶନିଆ"କୁ ଦେଖି ଦାସଙ୍କର ନାଢ
ହୋଇଗଲା ଘର ଗ୍ରୁନିଆଁ ।



କେକେ ଆଣିଦେଲେ ଖେଳନା ବନ୍ଧୁକ
'ଲୁନା' ତା'କୁ କଲା ଠୋ'
ମାଛିଯାକ ସବୁ ଉଡ଼ି ପଳେଇଲେ
କେକେ ହସିଦେଲେ ହୋଓ ।
କହିଲେ "ଲୁନା"ରେ ବଡ଼ ଦିନକୁ ତୁ
ହବୁ ଯେବେ ଗୋଟେ ବୀର ।
ଆଜଠାରୁ ଖାଆ ମାଛ, ମାଂସ, ଫଳ
ପିଇ ପେଟେ, ପେଟେ କ୍ଷୀର ।



ଏକ୍, ଦୁଇ, ତିନ୍
ଭାଲୁ ବଜାଏ ଗିନି ।
ଚୁଟିଆ ମୂଷା ପଇସା ଦେଇ ଟିକେଟ୍ ନିଏ କିଣି ।
ହଉଛି ସରକସ୍
ହନୁଟି ସେଠି ଚଉକିଦାର କହୁଛି ବସ୍ ବସ୍ ।



ଝାପାଇ, ତାପାଇ, ଦୁଇଟି ଭାଇ
ବଜାରକୁ ଗଲେ ପଶରା ପାଇଁ ।
ଝାପାଇ କିଣିଲା ଆଳୁ ବାଇଗଣ
ତାପାଇ କିଣିଲା ପୋଇ ।
ଅଧାବାଟ ଆସି ଘୁମେଇଲେ ବସି
ସବୁ ଖାଇଦେଲା ଗାଈ ।



ମୋ କୁନି ନାତବ ଘୁଙ୍ଗୁର ବାଇଁ ଲେ
ଜେଜେ ବଜେଇବେ ଗିନି ।
ଜେଜେମା ବସିବେ ପିଢ଼ାର ଧରଲେ
ଗୀତଟି ଗାଇବ ମିନି ।



ଖଟ ଉପରେ ମଶାରି ଟାଣି
ଘୁଙ୍ଗୁଡ଼ି ମାରେ 'ବଲେଇ' ନାନି
ପାଖରେ ବସିଚ୍ଛି 'ବାଲୁଆ' ଅଜା
ଓଧ କରୁଛି ଶେଣ୍ଢଳ ଭଜା ।
ଉଠିଲେ 'ନାନି' ଖାଇବ ଭାତ
ଦେଖିବାକୁ ଯିବ ମକର ଯାତ ।



ଲେଉଟାଣି ଖରା ସୁନା କରିଆଲେ
ମଥାନରେ ଶୋଇଗଲା
ମୂଷା ଦେଉଥିଲା ହଳଦୀ ଲଗେଇ
ବଲେଇ ଗାଧୋଉଥିଲା ।
ବଲେଇ ନାକରେ ଫୁଲ
ବଗ କରଥିଲା ମାଛର ବେପାର
ଚିଲ କରୁଥିଲା ମୂଲ ।



ଦାଦା ଦେଲେ ଉନ ଚକିଆ ଗାଡ଼ି
'ଜରୁ' ଚଢ଼ିଗଲା ଆଗକୁ ମାଡ଼ି ।

ଗାଈ ଗଡ଼ିଯାଏ ସୁର୍ ସୁର୍
ଜନ୍ତୁ ହସିଦିଏ କୁର୍‌କୁର୍ ।
ବେଲ୍ ମାରୁଥାଏ କପି
ପଛେ ବସି ତାର ଟିକ ଭଉଣୀଟି
ଗୀତ ଗାଉଥାଏ ହସି ।



ବିଲେଇ ବଜାଏ ଯୋଡ଼ି ନାଗରା
ମୂଷା ନାଚେ ପିନ୍ଧି ନାଲି ଘାଗରା ।
ଘାଗରା ଦହରେ ଜରିର ଫୁଲ ।
କାଠଯୋଡ଼ି ନଈ ଖାଉଚି କୂଳ
ନଈ ପାରି ପାଇଁ ବିଲୁଆ ନନା
ନାଆରେ ବସିଚି ଅନାରେ ଅନା ।



ମୂଷା ଯାଇଥିଲା କଟକ ବୁଲି
ବସ୍‌ରୁ ଓହ୍ଲେଇ ଡ଼ାକିଲା 'କୁଲି'
ଆସିଗଲା କୁଲି କାଳିଆ ଭୂଆ
ମୂଷା କହିଲା ମୁଁ ମଲିଲେ ମାଆ ।
କୁଲି ଆସିବା ମୋ ସେତକ ଥାଉ
ଆସିବି ନାହିଁ ମୁଁ କଟକ ଆଉ ।



ଅଠା ସାଲୁବାଲୁ ପଣସ କସି
ହନୁ ବକୁଅଛୁ ପରିବା ବସି ।
କେଉଲ ଧରିଚ ଅଖାର ଝୁଲି
କିଣିଚ ବଜାରୁ, କଦଳୀ ମୂଳା ।
କୋବି, ବାଇଗଣ, କଲରା, ସାରୁ
ଗାଜର, ପିଆଜ, ରସୁଣ, ଆଳୁ
ଦେଖି ହାଇଥାନ୍ତା ଟେନିସ୍ ଖେଳ
ପରିବା ଝିଅରେ ଗଲା ତା ବେଳ ।



କାଟିଗଲ୍ ସରୁ ସୁତା
ବରଷାରେ ବଗ ବନ୍ଧୀ ପକାଏ ।
ବଗୁଲି ଧରିଛୁ ଛତା ।
ମାଛ ଭାତ ଯେବେ ନଖାଏ ବଗୁଲି
ବସିଯାଏ ରାଗୀ ରୁଷି ।
ବଗ ବି ସେଦିନ ଉପାସରେ ରହେ
ସବୁଦିନ ଖାଏ 'ପୁଷି' ।



ବିଲୁଆ ପୁଅ ଜନମ ଦିନ ହେଉଛି ବଡ ଭୋଜି
ତିଅଣ ପାଇଁ କଙ୍କଡ଼ା ଶହେ ଆଣିଛି ସିଏ ଖୋଜି ।
ଗୁଣିଛି ମଣ୍ଡା, କାକରା ବରା
କିଣିଛି ଲଡ୍ଡୁ, ଜିଲପି କୋରା
ମହାନଦୀର ଇଲିସି ମାଛ ରଖିଛି ପୁଣି ଭାଜି
ବିଲୁଆ ପୁଅ ଜନମ ଦିନ ହେଉଛି ବଡ଼ ଭୋଜି ।



କାଉ ଡାକେ କା କା କୋଇଲି ଡାକେ 'କୁ'
କୁଆର ଛୁଆ ପାଟିରେ ଧରି ଭୂଆ କରିଲା ଛୁ ।
ଭୂଆର ପଛେ ଭାଲୁଆ ଧାଏଁ ଏତେ ଆଁ ଟେ କରି
ତା ପଛକୁ ଟିକି ବାଛୁରୀ-ବେକରେ ପଘା ଧରି ।
ବାଛୁରୀ ପଛେ ଆମର "ହରି" ବାଡ଼ିଟା ଧରି ଧାଏଁ
କିନ୍ତୁ ଆମର ସେଇମାନଙ୍କୁ ଝରକା ବାଟେ ଚାହେଁ ।



ଡାଳେ ଝୁଲେ ଜାମୁ କଷି ।
ମୂଷା ନାଚୁଅଛି ଝୁମ୍କୁ ଝୁମା କେ
ବିଲେଇ ଦେଖୁଛି ବସି ।
ବିଲେଇ ନାକରେ ଫୁଲ
ବିଲୁଆ, କୁକୁର ଦୁଇଦଳ ହୋଇ
ଖେଳୁଛନ୍ତି ଫୁଟବଲ ।
ବାଗୁଡ଼ି ଖେଳନ୍ତି ଭାଲୁ
ଲମ୍ବା ଜାଲି ତଳେ ବାଘ ଛୁଆ ସବୁ
ହେଉଛନ୍ତି କାଲୁ ବାଲୁ ।



ବଉଳ ଗଛର ବହଳ ଛାଇ
ହଳ ବୁଲଉଚି ଗଧିଆ ଭାଇ ।
ଗଧିଆ ଭାଇର ମୁଣ୍ଡରେ ଠେକା
ଯୋଚି ଦେଇଚି ସେ ଦୁଇଟା ହେଟା ।
ବଇଶାଖ ମାସ ଟାଣୁଆ ଖରା
ଦେଖି ଯାଇଥାନ୍ତେ ଝାମୁ ଯାତରା ।
ପିଇଥାନ୍ତେ ଥଣ୍ଡା 'ଲସି'
ଦିପହର ବେଳେ ଝାଳ ମାରିଥାନ୍ତେ
ଛମୁଣ୍ଡିଆ ତଳେ ବସି ।



ଘୁଁ ଘୁଁ ଘୁଲେ ଗାଡ଼ି-ନାଲି ସଡ଼କ ମାଡ଼ି
ପାଖେଇ ଯାଅ-ପାଖେଇ ଯାଅ-ବାଟ ତାକୁ ଦଅ ଛାଡ଼ ।
ବେଙ୍ଗ ବେଙ୍ଗୁଲି ବର କନିଆ
ଗାଡ଼ି ଭିତରେ ବସି
ଜରି ଫୁଲିଆ ମଉଟ ନାଇ
ହୁଅନ୍ତି ହସା ହସି ।
କନିଆ ହାତେ ଚୂଡ଼ି
ବର ପାଖରେ ଥୁଆ ହୋଇଚି
ଝିଡ଼ି ପୋକର ଝୁଡ଼ି ।



ମୂଷା ଯାଇଥିଲା ହାଟକୁ
ମୂଷି ରୁନ୍ଧିଥିଲା ବାଟକୁ ।
କିଆବୁଦା ମୂଳେ ନଅର, ପସର
ଦେଖ ନେଉଳର ନାଟକୁ ।
ନେଉଳର ମୁଖ ଘ୍ୱକସ କରୁଚି
ଚଳୁଚି ମଟର ଗାଡ଼ି ।
ନେଉଳୀ ପଢ଼ିଚି ଜର ବାଧକାରେ
ବିଲୁଆ ଦେଖୁଚି ନାଡ଼ି ।



ପୋଖରୀ କୂଳରେ ଇସ୍କୁଲଟିଏ
ଖୋଲିଥିଲା ବୁଢ଼ା ବଗ ।
ଗୁଟିପିଲା ହୋଇ ଖାତା, ବହି ନେଇ
ପାଠ ପଢ଼ୁଥିଲେ ବେଙ୍ଗ
ଶଶୁର ଘରକୁ ଯାଉଥିଲା ଥରେ
ସାପ ସେଇବାଟେ ହୋଇ ।
ଅ, ଆ, ଇ ଶବଦକୁ ଶୁଣି
ଦେଲା ସେ ଆଡ଼କୁ ଚାହିଁ ।
ବାପାଲୋ' ମାଆଲୋ କହି ।
ତାକୁ ଦେଖି ବେଙ୍ଗ ପଢ଼ା ଛାଡ଼ିଦେଇ
ପାଣିକି ପଡ଼ିଲେ ଡେଇଁ ।



ଛେଳି ଦେଖୁ ଦେଖୁ ସିନେମା ଥରେ
ଛବିରେ ଦେଖିଲା ବାଘ
"ଅରମେ" ଡାକ କହିଲା ସିଏ
କବାଟ ଫିଟାଅ ଆଗ ।
ବାଘ ଆଁ ଦେଖି ମାଡ଼ୁଛି ଡର
ପଳେଇ ଯିବି ମୁଁ ଧାଇଁ ।
କାନ, ନାକ ମୋଡ଼ି ହେଉଛି
ଆଉ ସିନେମା ଦେଖିବି ନାହିଁ



ପାଚିଲା ଧାନ ବିଲ ।
ଧାନ କାଟୁଛି ଚିଲ ।
ବୋହି ନେଉଛି କାଉ ।
ବଣି ଚଢ଼େଇ ରୋଷେଇ କରେ
ଭାତ ହେଲାଣି ଜାଉ ।
'ବିଲୁଆ ନନା'ର ପାକଲା ଦାଢ଼ି ।
ଖାଇ ବସିଛି ସେ ଚକ୍‌କା ପାରି ।
ଜାଉ ଗୁଟୁଛି ଚଟା ଚଟ୍
କହୁଛି ହାଅ ପଟା ପଟ୍ ।



ବଇଶାଖ ମାସେ ପଣସ ପାରେ
ଡାକ୍ ଧିନା ଧିନ ଗଧିଆ ନାଚେ ।
ଗୋଡ଼ରେ ତାହାର ଘୁଙ୍ଗୁରର ମାଳ
ବାଜା ସାଙ୍ଗେ ହାଙ୍ଗେ ପକାଏ ତାଳ ।
ମହୁଷ ବଜାଏ ଖଲୁର ବେଷ୍ଟା ।
ଢୋଲକି ପିଟୁଡ଼ ନଶୁଆ ଢେଷ୍ଟା ।
ଗୁଲଚ ହସ ଖୁସି ।
ଗରମ୍ ତାଜା, ବାଦାମ ଭଜା
ବକୁଚ ବୁଲ ପୁସି



ବିଲୁଆ ଯାଏ ଶିକାର କରି ଗୁଳି ବନ୍ଧୁକ ନେଇ ।
ଶିକାରୀ ବେଶ ବଢ଼ିଆ ହଣେ ଦେଖଣରେ ଦେଖ ଭାଇ ।
ବାଟରେ ତା'କୁ କୁକୁର ଦେଖି କଶିଲା ଏଡ଼େ ଆଁ ।
ରଡ଼ରେ ତା'ର ବିଲୁଆ ମଥା ହୋଇଲା ଖାଁ ଖାଁ ।
ଫୋପାଡ଼ି ଦେଇ ବନ୍ଧୁକ' ଗୁଳି ଜଣିଲା ସିଏ ଛୁ ।
ପଛରୁ ଥାଇ ଡାକଲା 'ଜିରୁ' ବିଲୁଆ ! ଚୁହୁ ଚୁ-ହୁ-



ବଗ ବଗୁଲି ଦୁହେଁ
କହିଲେ ଆମ୍ଭେ ଆମିଷ ଆଉ
ଦବୁନ ଜମା ମୁହେଁ ।
ଆଜଠୁ ହବୁ ବାବାଜୀ ମାତା,
ଜପିବୁ ନାମ-କାଟିବୁ ଚତା ।
ତୁଳସୀ ମାଳି ନାଇବୁ ପୁଣି-ଏକଥା ମିଛନୁହେଁ ।
ହସିଲା ଶୁଣି କାଉ ।
କହିଲା ତେବେ ପାଣି ପାଖରେ ବସିଚ କିଆଁ ଆଉ ।



ଓଧକୁ ଖାଇଜର ।
ପୁଅଟି ତା'ର ଡାକ ଆଣିଚ
'ବିଲୁଆ' ଡାକତର ।

ପଥ୍ୟ ତା ପାଇଁ ବଡ଼ା ହୋଇଚ
ପାଳୁଅ, ଶାଗୁ, ବାଲି ।
ନଖାଇ ତା'କୁ ଖୋଜୁଚ ଓଧ
ଶେଉଳ ଖୋଳ ଖାଲି ।



ଖାଲୁର ପୁଅ "ଭୁଲା"
ସହର ଦେଖି ଯିବାକୁ ଦିନେ ସକାଳୁ ମନକଲା ।
କାହାର ମନା ମାନିଲା ନାହିଁ
ଚୁଲି ଚୁଲିକା ଯେମିତି ଯାଇ
ସହର ପାଖେ ହେଲା ।
ଗାଡ଼ି ମଟର ଦେଖୁ ଦେଖୁ ତା ଛାତି ଧଡ଼୍କି ଗଲା
ପଳାଇ ଗଲା ଧାଇଁ ।
କହିଲା ମା'ଲୋ ବଣର ସୁଖ ଆଉ କେଉଁଠି ନାହିଁ ।



ହାତୀର ନାତି ବିଦେଶେ ଗଲା
ଉଡ଼ା ଜାହାଜେ ବସି
ଖାଇଲା ଲଡୁ ଜମିକି ଗଜା ସେ
ପିଇଲା ଥଣ୍ଡା ଲସି ।
ପଢ଼ିଲା ଭଲ ପାଠ ।
ଝଁର କଲମେ ଲେଖିଲା ପୁଣି
ଚାରି ଦିଗୁଣ ଆଠ ।



ଗଧ ପୁଅର ବରତ ଘର
ଲାଗିଚ ଖୋଜ ଖାତର ଧୁମୂ ।
ନେଉଳ ନାଚେ, ନାଚୁଚି ପୁଷି
ଝୁମୁରୁ ଝୁମ୍—ଝୁମୁରୁ ଝୁମ୍ ।
ନାଚ ତାଳରେ ବଜାଏ ଖାଲୁ
ଢୋଲକ ଦୁମ୍—ଦୁମୁରୁ ଦୁମ୍ ।
ଦେଉଳୀ ପାଖି ଗାଏ ଗୀତ
ଘୁମୁରୁ ଘୁମ୍—ଘୁମୁରୁ ଘୁମ୍



ଆମ ଜଗୁ ଡାକତର ରୋଗୀ ତା'ର ଅଜା
ନାଡ଼ି ଦେଖି କହିଲା ସେ ଖାଅ ମାଛ ଭଜା ।
ମିଠା ଦହି, ଲସି, ପିଅ ଯେତେ ତୁମ ଇଚ୍ଛା ।
ତେବେ ଯାଇ ହବ, ମନ ଲାଗିବଟି ଆଚ୍ଛା ।



ହାତୀ ଉପରେ ପାଠ ବସି ଯାଏ ବଜାର ବୁଲି ।
ନାଲି ଗାମୁଚ୍ଛା ଅଣ୍ଟାରେ ଭିଡ଼ି ଖାଲୁ ଲଗାଏ ଚୂଲି ।
ପଣ୍ଡା କାଟେ ହରଣୀ ନାମୀ ।
ଗଧିଆ ବୀର ବୁହାଏ ପାଣି ।
ମଯଲା ବାଟେ ଠେକୁଆ ବସି
ନେଉଳ ଦଏ ମାଉଁସ କଷି
ହନୁ କରୁଚି ଭଜା ।
ଫେରିଲେ ପାଠ' ରଜା
ଏକାଠି ସବୁ ବସିବେ ଖାଇ
ହେବରେ ଖେଳ ମଜା ।



ମେଘ ବରଷିଲା ଟୁପୁରୁ ଟୁପୁରୁ
କାକୁଡ଼ି ଧଇଲା ଫସି ।
ମାଙ୍କଡ଼ ଯାଉଛି ବରବେଶ ହୋଇ
'କୁକୁର ପିଠିରେ ବସି ॥
ବାଣ ଫୁଟେ ଢୋ ଢୋ
ଝଡ଼ ବାଆ ହେଲା ଗଛ ଭାଙ୍ଗିଗଲା
ମାଙ୍କଡ଼ ନ ହେଲା ବାହା ।



ଗଧ ଯାଉଥିଲା ଉଡ଼ାଜାହାଜରେ
ଆଖିରେ ଚଷମା ଦେଇ ।
ଭୋକହେଲା ଯହୁଁ ଘାସ ଖାଇବାକୁ
ତଳକୁ ପଡ଼ିଲା ଡେଇଁ ।
ଗୋଡ଼ ତାର ଭାଙ୍ଗିଗଲା
ମୁନ୍ନା ଦେଖୁଥିଲା ତଳେ ଠିଆହୋଇ
ହସି ହସି ଗଡ଼ିଗଲା ।



ଲୁଚି ଲୁଚି 'ଜଗୁ' ବନ୍ଧୁ ପଢୁଥିଲା
ଅଜାଙ୍କ ଚଷମା ମଡ଼େଇ ।
"ଭଲ ଆଖି ତୋର ଖରାପ ହେବରେ
କହି ଆଣି ନେଲେ ଛଡ଼େଇ ॥
"ଜଗୁନା" କହିଲା ମତେ କଣ ତମେ
ଦବନାହିଁ ଟିକେ ପଢ଼େଇ ?
ଦେଖିବ ମୋ ବଳ ? ତୁମ ସାଥିରେ ମୁଁ
କରିବି ଏଇନେ ଲଢ଼େଇ ॥
ସତକୁ ସତ ସେ ଆଈଙ୍କୁ ତାହାର
ଖଟ ଉପରେ ଦେଲା ଗଡ଼େଇ ।
ହସୁଥିଲେ ଆଈ, ରାଗିଯାଇ ମାଆ
ଯାଉଥିଲେ ହାତ ବଢ଼େଇ ।
କହୁଥିଲେ "ତୁମେ ଟେହ୍ଳାକରି ତାର
ମୁହଁଟା ଦେଲଣି ବଢ଼େଇ ।
ନାହିଁ ନାହିଁ କହି 'ଜଗୁ'କୁ ତା ଆଈ
କୋଳରେ ଧଇଲେ ଜଡ଼େଇ ।
କହିଲେ ଏଇ ମୋ ରୂପା ବଗିଚାରେ
କଥା କୁହା ସୁନା ଚଢ଼େଇ ।



ଆରେ ଜହ୍ନ ତୁ ଆକାଶେ ଉଇଁ
ତୋହର ପାଖକୁ ଯିବଟି ମୁହିଁ ।
ରକେଟ୍‌ରେ ବସି ଯିବି ମୁଁ ଚାଲି
ତୋ ଉପରେ ବସି ମାରିବି ତାଳି ।
ମୋ ସାଥିରେ ଥିବେ ଟିକଲି, ମୀନା
ନାଚିବୁ ସଭିଏ ଧିନକ ଧିନା ।



ଆକାଶରେ ଯିଏ ଦୋଳି ଲଗେଇବ
ସିଏ ତ ଆମର 'କୁନା' ।
ଗଛ ଲଗାଇଲେ ରୂପା ଫୁଲ ଫୁଟି
ଫଳିବ ତହିଁରେ ସୁନା ।
ସମୁଦ୍ର ପାଣିକୁ ଶୁଖାଇ ସେ ତା'ର
ଭିତରେ ଦେଖାଇ ଦେବ
ମନକଲେ ସିଏ ଆପଣା ଖୁସିରେ
ପବନକୁ ବାନ୍ଧି ନବ ।



ପରଜାପଡାରେ ପରଜା ପଥ
ସ୍ୱର୍ଗକୁ ଦବ ବିଜୁଳି ବତ୍ତି ।
ନଈ, ନାଳ ଦବ ଚାଷୀକୁ ପାଣି
ମେଘ ବରଷିବ ମନକୁ ଜାଣି ।
ତାଲଚେର ଦେବ ଜମିକୁ ସାର
ଶସ୍ୟ ଶସ୍ୟ ହୋଇ ଝୁଲିଲେ କଳ ।
କାହିଁରେ ଅଭାବ ରହିବ ନାହିଁ
ହସରେ ଖୁସିରେ ପୂରିବ ଘର ।



'ଉଡ଼ାଜାହାଜ'ରେ 'ଉଡ଼ାଜାହାଜ'
ରକେଟ୍ ତୋ'ର 'ନାଓ' ।
ବେଲୁନ୍ ତୋର ପାକୁଆ 'ଅଜା'
ଜେଟ୍ ତୋର 'ସାଥି' ।
ପାଣି ଜାହାଜ 'ମିତ'
ମନ ମଉଜେ ଉଡ଼ୁ ତୁ ଗାଇ
ଭୁଁ ଭୁଁ ଭୁଁ ଗୀତ ।



ଆମ ସ୍ୱପ୍ନ ଯେବେ ସାରିବ ପଢ଼ି
କେତେ କୋଣାରକ ଦବ ସେ ଗଢ଼ି ।

କୋଠା, ବାଡ଼ି ମାନ କରିବ ଠିଆ
ପାଣି ଭିତରେ ସେ ଜାଳିବ ନିଆଁ ।
ମାଟି ତଳେ ଅଛୁ ଯେତେ ଦରବ
ଉପରକୁ ସିଏ କାଢ଼ି ଆଣିବ ।
ଆକାଶ ହେବ ତା ଖେଳ ପଡ଼ିଆ
ପହଁରିବ ସିଏ ହାତ—ଦରିଆ ।
ଝଡ଼ ବରଷା ତା ବୋଲ ମାନିବେ
କଥା ମାନି ତାର ଆସିବେ ଯିବେ ।
ଲୁହା, ପଥରକୁ କଥା କୁହାଇ
ନୂଆ ନୂଆ କାମ ଦବ ଦେଖାଇ ।



ବାପା ଆଣିଛନ୍ତି ଟେଲିଭିଜନ
କୁନିଆଁର ଯାଇ ସେଇଠି ମନ
ସାରି ଦେଇଚ ସେ ତାହାର ପଢ଼ା
ଟେଲିଭିଜନ ସେ ଦେଖିବ ପରା ।
ସେଥିରୁ ସେ ଭଲ କଥା ଶିଖିବ
ତା ସାଙ୍ଗ ପିଲାଙ୍କୁ ଶିଖାଇ ଦେବ ।



ଖବର କାଗଜ ପଢ଼ି ।
କୁନା, କୁନୀ ଦୁହେଁ ହସି ଯାଉଥିଲେ ଗଡ଼ି
'କୁନା' ଟି କହୁଚ 'କୁନି' ।
କଳର ମଣିଷ ଗୁରୁଜୀ ହୋଇବେ
ଆମେ ଛାତ୍ର ହେବା ପୁଣି ।
ପଢ଼ାଇଦେବେ ଭଲ ପାଠ
ଆମର ପାଇଁକି ସେଇ ପାଠ ଦବେ
ଫିଟାଇବ ନୂଆ ବାଟ ।
ଏଇତ ଖବର ନୂଆ
ଜାଣିଥାଆ ଆମେ ଯନ୍ତ୍ରଯୁଗର ଛୁଆ ।



'ଜଗୁ' ଚାଲିଯିବ ରକେଟ୍‌ରେ ବସି
ଚନ୍ଦ୍ର ରାଇଜକୁ ଉଡ଼ି
ଆମପାଇଁ ସିଏ ପଠାଇବ ସେଠୁ
ଆକାଶର ଫଳ ଝୁଡ଼ି ।
ଆସିଲା ବେଳକୁ ସାଥିରେ ଆଣିବ
ସେଠାକାର ସାଙ୍ଗ ସାଥି ।
ସେଇ ରାଇଜର ପୋଷାକ-ପତର
ଖେଳନା ଜାତକ ଜାତ ।



ବହି ପଢ଼ି ସାରି ଜେଜେଙ୍କ ଆଗରେ
ଜୁନା କହୁଥିଲା ହସି ।
"କଳର ମଣିଷ କଥାଟି କହୁଅଛି
ଅଙ୍କ ଦେଉଅଛି କଷି ।
ଡାକଘର ପରି କାହାର କି ଖବର
ପାରୁଅଛି ସବୁ ଜାଣି ।
ଯୋଗେଇ ଦେଉଚି ପଥ୍ୟ ଅଉଷଧ
ରୋଗୀର ପାଖରେ ଆଣି ।
ଦୋକାନେ, ବଜାରେ ବିକା କିଣା କରି
ହିସାବ ରଖୁଚି ସିଏ ।
ମଟର-ଜାହାଜ, ରେଲ ଚଳଉଚି
ତାହାପରି ହବ କିଏ ।
'ରୋବଟ୍' ତାହାର ନାମ ।
ଜେଜେ କହିଲେ 'ଏ କଳ ଯୁଗ ପରା
'କଳ' କରେ ସବୁ କାମ' ।



ଆମ ଜୁନା ବାବୁ, ମାଛ ଭଳି ବୁଡ଼ି
ଦେଖିବ ଦରିଆ ତଳ ।
ମନ ହେଲେ ସେହି ପାଣି ରାଇଜରେ
କରିବ ତାହାର ଘର ।

ଦରିଆ ଭିତରେ କେତେ ଗଛ ମାଛ
ହାଙ୍ଗ, ମାଲା, ମୋଣ୍ଡ ମାନ
ଦେଖିବ ଆଣିବ ଉପରକୁ ଯିଏ
ହେବ ଯେବେ ତାର ମନ ।



ଆମ 'ଜରୁ' ବାବୁ କଅଣ କେଜାଣି
କହିଦେଲେ ହାତଠାରି ।
ଗଛ ମାନେ ସବୁ ବୁଝିପାରି ତାହା
ବାହାରିଲେ ବୁଲି ବୁଲି ,
କିଏ ଦଉଡ଼ିଲା କିଏ ସେ ଡେଇଁଲା
କିଏ ହଲାଇଲା ମଥା ।
ହଁ, ହଁ କହୁ ଆମ 'ଜରୁ' ବାବୁ
ବୁଝୁଥିଲା ତାଙ୍କ କଥା ।



ଗଜରାମାଲ କି ହଜରା ମାଲ ।
ଏମିତିଆ ଚୂଲି ଜଳେନାଁ ଜାଳ ।
କାଠକି ଲୁଟା—ଘଷିର ମୁଠା,
ପାଖରେ ତାହାର ଥାଏ ନାଁ ।
ରନ୍ଧା ଘରେ ଖାଲି ରହେନାଁ ।
ବିଜୁଳି କିଆଁ ତା ଜାଳେଣି ।
ଧାସ କାଟେ ନାହିଁ, କଳା କରେ ନାହିଁ
ଧୂଆଁ ପାଇଁ ନାହିଁ ସଳେଣି ।



ଝୁମୁକୁ ଝାଇଁ—କଳର ଗାଇ
କଳଗାଇଟିର ବାଛୁରି ନାହିଁ ।
ଚରି ଯାଉନି କି ବନ୍ଧା ହଉନି
ଘାସ, କୁଟା, କୁଣ୍ଡା, ପିଡ଼ିଆ ଖାଇ
ଖୁସିରେ ସେ କ୍ଷୀର ପାରୁଚି ଦେଇ
ବାବୁନି ଖୁସି ତା କ୍ଷୀରକୁ ପିଇ ।



ବାପା ଆଣିଥିବା କଳ ଖୁଲିବାରୁ
ଝମ୍ପୁମ ହୋଇଲା ଜେଜଙ୍କ ଘର ।
ଶ୍ରୀଭଦନ ସାଥି କଥାଁ ଉଦ୍ବେଳକୁ ଜେଜେ,
ଜେଜେ ମାଆ କରଲେ ପର ।
ନାଚ, ନାରୁଣୀଏ ବେଳ ବୁଡ଼ିଗଲେ
ସେଇ ଘରଟିରେ ବସିଲେ ଯାଇ ।
ଶୁଣିଲେ ଜେଜେଙ୍କ ମଜା।ଗପ ସବୁ
ଜେଜେମା କୋଲରେ ପଡ଼ିଲେ ଶୋଇ ।



'ଟିକନ' କହିଲା କେମିତି ମଜା ।
କଳ କରାମତି ଜାଣିଲ ଅଜା ।
ଆଉ ଶୁଣି ଦେଲେ ଠୋ ଠୋ ହସି ।
କହିଲେ ଏପରା କଳଯୁଗ ସାଙ୍ଗେ
କଳଯୁଗ ସାଙ୍ଗ ହୋଇଲା ଆସି ।
ଜାଣିଲୁ 'ବାବୁ'
ଆମ କାଳରେ ଏ ନଥିଲା ସବୁ ।



ନଈର ପାଣି କି ପୋଖରୀ ପାଣି
କଥାଁ ଲାଗି ତାହିଁ ଉଠୁଛି ଧୂଆଁ ।
କେମିତି ଉଠୁଛି ?
ଏ କଥାଟି ଖୋଲି କହିବ ଯିଏ,
ଜାଣୁ ଦବ ତା'କୁ ଗୋଟିଏ ମୁଆଁ ।



ପାଠ ପଢ଼ି ପୁଅ ଜହ୍ନ'ରାଇଜକୁ
ଚିଠି ଲେଖି ପଠାଇବ ।
ସେ ରାଇଜ ପିଲା ବୁଲି ଆସିବାକୁ,
ସେଥିରେ ସେ ଲେଖିଥିବ ।
ଭାରି ଖୁସି ହୋଇ ପୁଅ ଝିଅ ସବୁ
ଆସିବେ ସେ ଚିଠି ପାଇ ।
ଆମ ପୁଅ ସାଙ୍ଗେ ଆରିଷା କାକରା,
ଖେଚେଡ଼ି ବସିବେ ଖାଇ ।

ଖିଆ, ପିଆ ସାରି ଖେଳାବୁଲା କରି
ଦେଶକୁ ଫେରିବେ ଯେବେ
ଆମ ପୁଅ ଝିଅ ସାଙ୍ଗରେ ତାଙ୍କର
ଫୁଲ, ଫଳ, କୋଳି ଦେବେ ।



ରକେଟ୍ ଦଉ ଗୁଡ଼ି ।
ରକେଟ୍ ଦଉ ଗୁଡ଼ି ।
ମୋ ପୁଅ ଯିବ ଚନ୍ଦ୍ର ଦେଶେ
ସେଇ ରକେଟ ଚଢ଼ି ।
ସେଇଠି ସିଏ ରହିବ ଯାଇ
ସାଥିରେ ନେବ ଭଉଣୀ ଭାଇ
କରିବ ତା'ର, ଘର ଦୁଆର
କିଣିବ ଜମି ବାଡ଼ି ।
ପୋଖରୀ ଖୋଳି ଛାଡ଼ିବ ମାଛ
ଫସଲ କରି ବାଛିବ ଘାସ
ଲଗାଇ ଦେବ ଗୁଆ-ନଡ଼ିଆ-
ପଣସ ଗଛ ଧାଡ଼ି ।
ଯିବା ଆସିବା କରିବା ପାଇଁ
କିଣିବ ନୂଆ ଗାଡ଼ି ।



ଘିରି ଘିରି ହୋଇ ବୁଲୁଚି ପଙ୍ଖା ଟେଲା
ତାକୁ ବୁଲେଉଛି କିଏ ।
ଆମ ପୁଅ ଯେବେ ବଡ ହୋଇ ଯିବ
କହିଦେବ ଏକା ସିଏ ।
କେହି ନଜାଣେ ମୋ ପୁଅ ଜାଣିବ
ସବୁ ନଜାଣିବା କଥା ।
ସବୁ କାମ ଯାକ ଭଲ କରିବାକୁ
ଖେଳାଇବ ସିଏ ମଥା ।



ମାଛ ଖାଇସାର ମନଟିକୁ କର ଖୁସି ।
ଫୋନ୍ କଲା ବସି ତା' ମାଆ ପାଖକୁ ପୁଣି ।
"ଆଜ୍ଞା' ସକାଳରୁ ପଦ୍ମଶ୍ରୀ ଛୁ ଆସି 'ଭୂଆ'
ଆଣିଚ ଗୋଟିଏ 'ଟେଲିଭିଜନ' ସେ ନୂଆ ।
କେତେ ଗୀତ, ନାଚ, କେତେ ପୁଣି ନୂଆ କଥା ।
ଦେଖି, ଦେଖି ତହୁଁ ଘୂରୁ ଯାଉଚ ମୋ ମଥା ।
ଆସିବୁ ତୋତେ ମୋ ପ୍ରାଣ ।
ଥରେ ତୁ ଦେଖିଲେ ସବୁବେଳେ ତୋର ଦେଖିବାକୁ ହବ ମନ ।



ମଥାରେ ତାଙ୍କର ମଣି ଝଲସଇ
କଟକେ କଟକ ଚଣ୍ଡି ।
ପୁଅ ମୋ'ର ତାଙ୍କୁ ଦରଶନ କଲେ
ଫୁଲମାଳେ ଦବ ମଣ୍ଡି ।
ଲଡ୍ଡୁ, ଗଜା, ସର ପୁଳି ।
ପେଡ଼ା, ଛେନାଗଜା, କୋସ ଭୋଗକର
ଘିଅଦୀପ ଦବ ଜାଳି ।



ମଥାକୁ ସୁନ୍ଦର ଟୋପି ଚନ୍ଦନ ଲେଇ
ଗଳାକୁ ମାଳଇ ମାଳି ।
ପୁଅ ମୋର ଗଲେ କଲିକତା ବୁଲି
ଦେଖିବ ଦକ୍ଷିଣ 'କାଳୀ' ।



ସ୍ୱମ ଚଣ୍ଡୀ ଦେବୀ ଗ୍ରାମ ଦେବତା
କୋଣାରକ ଆଢ଼େ ଘର
ଗାଡ଼ିରୁ ଓହ୍ଲେଇ ଆସରେ ଆଗ
ଦେବୀ ଦରଶନ କର ।
ଇଲି ଇଲିକା ନାଁ । ଚିଲିକା
ଚିଲିକାରେ "କାଳିଜାଈ"
"କାଳିଜାଈ" ଡାକ 'ନାଆ' ଫିଟାଇଲେ
ବିପଦ, ଆପଦ ନାହିଁ ।



ପାଣିତ ଖେଳୁଚ ଚକା ଭଉଁରି ଲେଇ
ଦୋହଲି ଯାଉଚ ନାଆ ।
ମହାନଦୀ କୂଳେ ଧବଳେଶ୍ୱରଟି
ସବୁରି ଭରସା ସାହା ।
ସିଂହର ପିଠିରେ ବଜେ କରିଚନ୍ତି
ଝଙ୍କଡ଼େ 'ଶାରଳା' ମାଆ
ଗଜ ମୂରୁଖ ବି ପାଠୁଆ ହୁଏଟି
'ଶାରଳା' ହୋଇଲେ ସାହା ।



୧—ଫୁଲ, ଫଳ ଫସଲରେ ବାଲିପଦା ଭରିବ
ମାଟି ବିନା ଗଛ, ଲତା ଆକାଶରେ ଫଳିବ ।

୨—ସମୁଦ୍ର ତଳରେ ଆମେ ଘରଦ୍ୱାର କରିବା
ବିଜୁଳିକୁ ଦିନେ ଆମେ ହାତରେ ବି ଧରିବା ।

୩—ଆମରି ସହର ହେବ-"ଜନ୍ମମାଟି" ରାଇଜ ।
ତାରି ସବୁ ଗାଆଁ ହେବେ-ହେବ ବଡ଼ ମଉଜ ।

୪—ଖରା, ବରଷା, ପବନ, ଆମ କଥା ମାନିବେ
କଳର ମଣିଷ ସବୁ କାମ-ଦାମ କରିବେ ।

୫—କଳ ଗାଈ କ୍ଷୀର ଦେବ ଶହ ଶହ ଲିଟର
ଧନ, ରତନ ଯେତେକ ଅଛି ମାଟି ଭିତର—

୬—ଆମରି ହାତରେ ସବୁ ଉପରକୁ ଆସିବ
ବଡ଼ ବଡ଼ କାରଖାନା କଳମାନ ବସିବ ।

୭—ଅଭାବ, ଅସୁଖ, ରୋଗ ଭୋଗିବେନି କେହିରେ
ସତ ହେବ ଦିନେ ଯାହା ଲେଖାଅଛି ବହିରେ ।



ଆମ ଜଗନ୍ନାଥ ଦାରୁ ଦେବତା
ଭାଇ ଭଉଣୀଙ୍କୁ ସାଥିରେ ଧରି
ଚକାଆଖି ମେଲି ଦେଉଛନ୍ତି ବଡ଼େ
ଦିଅରେ, ଦିଅରେ ଜୁହାର କରି ।
ତାଳରେ ତାଳ ପୋଡ଼ିଲା ମାଳ
'ଭଦ୍ରଖେ' ବଡ଼େ ଭଦ୍ରକାଳୀ ।
ଦରଶନ ତାଙ୍କୁ କରିବ କୁନା
କାଳୀ କରିବେ ତା ମନକୁ ସୁନା ।
ଗଙ୍ଗାପାର ହେଲେ ଦକ୍ଷିଣକାଳୀ
ମଶାଣି କାଳୀଟି କଟକେ ।
କାଠଯୋଡ଼ି ବନ୍ଧେ ଗୁଲି ଯାଉଥିଲେ
ଆଖି ତାଙ୍କ ପାଖେ ଅଟକେ ।



'ବାର୍କି'ରେ ଚଢ଼ିକା ବନେ ।
ଦେଖି ତୁ ଆସିବୁ ନଳେ
କୋଣାର୍କ ଯେବେ ଯିବୁ ।
ଆଖିରେ ପଲକ ପଡ଼ିବ ନାହିଁ ଯେ
ଦେଉଳକୁ ଦେଖୁଥିବୁ ।
ଦେଉଳ ସହର 'ଭୁବନେଶ୍ୱର'
'ଲିଙ୍ଗରାଜ'ଙ୍କର ଦେଉଳ ବଡ଼ ।
ଦେଖିବାକୁ ଯେବେ ପଡ଼ିବ ଯୋଗ
ଉଖୁଡ଼ା କଦଳୀ କରିବା ଭୋଗ ।



ମଗୁଣୀର—ମଗୁଣୀର ମାସ କେମିତି ଗୁଣିବ
ପିଠା ମାଣବସା ପାଇଁ ?
କୁନ୍‌ମୁନ୍ ମୋର ଶୀତରେ ସକାଳୁ
କୋଳ ମୋ'ର ଛାଡୁନାହିଁ ।
ସୋରିଷ କ୍ଷେତରେ ହଳଦିଆ ଫୁଲ
ଫୁଲରେ ପହଁରେ ବାଆ ।
ଚଷା ଭାଇ ଯାଏ ଧାନ କାଟିବାକୁ
ହାତରେ ଦାଉଡ଼ି ଦାଆ ।

ପୁଷ—ପୁଷ ମାସ ହେଲା ପାଖରେ ବସାଇ
ଝୁଡ଼ିକ କହିଲା ଝୁଅଁ ।
ସଙ୍କରାନ୍ତି ଦିନ ଜେଜେମା ଆମକୁ
ଖୋଇଦେବେ ଧନୁ ମୁଆଁ ।

ମାଘ—ମାଘ ପୁନଅଁକୁ 'ଅଗି' ଜଳିବଟି
ଗଦାହେବ ଛଣ ଧାନ ।
ଅଗି ନଆଁ ଦେଖି ଶୀତ ପଳାଇବ
ଭାଙ୍ଗିଯିବ ତା'ର ଟାଣ—

ଫଗୁଣ—ଆମ୍ବ କଷି ନେଇ ଫଗୁଣ ଆସିଲା
କୋଇଲି ଗାଇଲା 'କୁହୁ'
ମୋ ଧନ କହୁଛି 'ଦୋଳ ମେଲଣ'କୁ
ମାମୁଁ ଘର ଯିବ ମୁଁ ।

ଚୈତ୍ର—ଚଇତ ପୁନେଇ ଚଇତ ଘୋଡ଼ାଟି
ନାଚ କୁଲେ ଗାଁ ଗାଁ ।
ନାଚଇ ରାଉତ, ନାଚେ ରାଉତାଣୀ
ଦେଖିବୁରେ ଧନ ! ଯାଆ ।
ବୈଶାଖ—ବଇଶାଖ ମାସେ ଗୁଉଁ ଗୁଉଁ ଖରା
ଖରାରେ ବୁଲନା କେହି ।
ଖରାବେଳ ଯାକ ଘରେ ଥିଏ ରହି
ସୁନା, ସୁଅ ଝିଅ ସେହି ।
ଜ୍ୟେଷ୍ଠ—ଜ୍ୟେଷ୍ଠ ମାସେ ଘୋର ଟାଣୁଆ ଖରା
ହରିଣ ଛୁଆଟି ନଦିଏ ଧରା ।
ଶୋଇ ପଡ଼ିଚ ସେ ଗଛ ଛଇରେ
'ସୁନାପୁଅ' ତାକୁ ଉଠା ନାହିଁରେ ।
ଉଠିଲେ ଖୋଜିବ ମାଆକୁ ତା'ର
ନପାଇ ଛାଡ଼ିବ ଲୁହର ଧାର ।
ଆଷାଢ଼—ଟୁପୁ ଟୁପୁ ଟୁପୁ ମେଘ ଟୋପା ଆଣି
ଆସିଚ 'ଆଷାଢ଼' ମାସ
ଲୁନା, ଲୁମୀ ସବୁ ଓଦା ହୁଅ ନାହିଁ
ଧରିବ ଶରଦ, କାଶ ।
ଶ୍ରାବଣ—'ଶିରାବଣ' ମାସେ କହିଲେ ମାଆ
'ଚକୁଳି' ସାଙ୍ଗରେ 'ଚଟୋଉ' ଖାଆ ।
ଥାଳି ଭରି ଖୁଡ଼ୀ ଦେବେଟି ବାଢ଼ି ।
ଲୁନା ଖାଇଦେବ ହାଲୁଟି ମାରି ।
ଗୋଟା ଗୋଟା କରି ମାରିବ ହାଇ ।
ଜେଜେମା କୋଳରେ ପଡ଼ିବ ଶୋଇ ।
ଭାଦ୍ରବ—ଭାଦୁଅ ମାସର ଗୁରି ରବିବାର
ଖଦୁରୁକୁଣୀ ପୂଜା ହେବ ।
ମୋ ଲୁମ୍ନା ପୂଜିବ ମାଆ ମଙ୍ଗଳାଙ୍କୁ
ଲଡ଼ୁ, ଗଜା ଭୋଗ ଦେବ ।
ଆଶ୍ୱିନ—ଅଶିଣ ମାସରେ ଦଶହରା, ଯାତରା
ଦେଖିଯିବେ ଅଜା ଆଉ ।
ଭଲ ଭଲ କେତେ ଖେଳନା ଆଣିବେ
ଆମ ଲୁନା ଲୁମ୍ନା ପାଇଁ ।

କାର୍ତ୍ତିକ--'କାରତକ' ମାସ ଉଆଁସ ରାତରେ
ଜୁଳା ଦବ ଦୀପ ଜାଳି ।
ବାଣ ଫୁଟାଇବ ଠୋ, ଠା ଠୁ
କୁମା ମାରୁଥିବ ତାଳି ।



ଶୀତ ଅଇଲରେ ଶୀତ ଅଇଲା
ଘୋଡ଼ା କାନେ ଯାଇ ଗଧ କହିଲା ।
ତୁମର ମୋ'ର ବସିବା ମିତ ।
ମୁଁ ଗାଇବ ଭଲ ବଢ଼ିଆ ଗୀତ ।
ତୁମେ ବଜାଇବ ବାଜା ।
ଶୁଣି ମନ ହବ ତାଜା ।



ଶ୍ରାବଣ ମାସେ ଘୋର ବରଷା
ବେଢ଼ଫଣ କାମେ ଲାଗଇ ଚଷା
କଙ୍କଡ଼ା ବାହାରେ ଗାତରୁ ।
ବାବୁକ ପାର୍କେକ ଟିକ ଛତାଟିଏ
ବାପା ଆଣିଚନ୍ତି ହାଟରୁ ।



ଅଣିଶେ ଧୋବଳ ଜହ୍ନଶୋ
ଫୁଲ ବଉଳ ବେଣୀ
ସେଇ ଜହ୍ନ ତଳେ ସାଙ୍ଗସାଥି ମେଳେ
କୁମା ଗୀତ ଗାଏ ଶୁଣ ଗୋ
ଫୁଲ ବଉଳ ବେଣୀ ।୧।
ନଡ଼ିଆ ଗଛର ଗୁଇ ଗୋ
ଫୁଲ ବଉଳ ବେଣୀ
ଲିଟୁ, କାଟୁ ଯିବେ ଦଶରା ଯାତକୁ
ସାଙ୍ଗେ ନେଇ ଅଜା, ଆଇ ଗୋ
ଫୁଲ ବଉଳ ବେଣୀ ।୨।



ଫଗୁଣ ମାସରେ ଦଗୁଣ ଶୀତ ।
'କୁନା' 'କୁନି' ମୋର ଗାଇବେ ଗୀତ ।
ଆମ୍ବକସି ଲୁଣ ଖାଇବେ ବସି ।
ମାଆ ମନାକଲେ ଦେବେ ସେ ହସି ।
ପୁନଅଁ ବାସିରେ ହୋଲି ଖେଳିବେ ।
ଜେଜଙ୍କ ମୁହଁରେ ରଙ୍ଗ ବୋଳିବେ ।
ଜେଜେ ମାଆ ଦେବେ ହସି
ଖଜା, ଗଜା, ଲଡୁ-ପିଠା ବାଣ୍ଟି ଦେବେ
ପିଲାଏ ଖାଇବେ ବସି ।



ଆମର ‘ଜିତୁ’ଟି ପରଜାପତି
ଫୁଲଠାରେ ତା'ର ଶରଧା ଅତି ।
ରାତି ପାହୁ ଯେବେ ସକାଳ ହୁଏ
ଶେଯରୁ ଉଠି ସେ ବଗିଚୁ ଧାଏଁ ।
ଫୁଲ, ମହୁମାଛି, ଭଅଁର ସାଥେ
ହସି ହସି ସିଏ ଖେଳରେ ମାତେ ।



ଦୁନିଆ ଯାକରେ ଯେତେ ପୁଅ, ଝିଅ
ମୋ ମୁନ୍ନା ଭଉଣୀ ଭାଇ ।
ପାଠ ସେ ପଢ଼ିବ ଦେଶ ସେ ଗଢ଼ିବ
ଲଢ଼ିବ ତାଙ୍କର ପାଇଁ ।
ମୋ ପୁଅ ପରି କିଏ ହେବ ।
ଉଡ଼ି ଯାଉଥିଲେ ଲେଟଣୀ ପାରିଟି
ଧରି ଆଣି ସିଏ ଦବ ।



ଓଳିକ ଓଳି କଣ୍ଢେଇ କୋଳି
କୋଳି ଖାଇଗଲା କାଳିଆ ।
ଆମର ପୁଅଟି ସରଗ ଚାନ୍ଦ
ଆମ ଝିଅ ସୁନା ଥାଳିଆ ।
ସୁନା ଥାଳିଆରେ ମାଣିକ ମାଳି
‘ସରଗ ଚାନ୍ଦ’କୁ କେ ଦେଲା ଗାଳି ?
ଶୁଖି ଯାଇଚି ତା ମୁହଁ ।
ଆ' ଧନ ମୋର କୋଳକୁ ଆ'ରେ
ପୋଛି ଦେବି ତୋ'ର ଲୁହ ।



ଟେଙ୍ଗ, ବେଙ୍ଗ ଦୁଇ ମିତ ।
ଗଡ଼ିଆ ଭିତରେ ଟେଙ୍ଗ ନାଚୁଥିଲା
ବେଙ୍ଗ ଗାଉଥିଲା ଗୀତ ।

ଚଲ କାଉ ଦୁହେଁ ଦେଖି
ଚଲ ଝାମ୍ପିନେଲା 'ଚେଙ୍ଗ'କୁ
'ବେଙ୍ଗ'କୁ କାଉ ନେଇଗଲା ଟେକି ।



ବଗ ଗୁଲେ ଡଗ ଡଗ
ବଗ, ବେଙ୍ଗ ଦୁହେଁ ସଙ୍ଗାତ ବସିଲେ
ଦେଖି କାହାଳିଆ ପାଗ ।
ଦେଉଳେ ବାନ୍ଧିଲେ ନେତ
ସାଥି ହୋଇକର ଦେଖିବାକୁ ଗଲେ
ଜଗନ୍ନାଥଙ୍କର ରଥ ।



ଖସ୍‌ରେ ଖସ୍ ତୁ କାହିଁକି ଆସି
ଝାଳ ଗମ ଗମ ବୁହାଇ
ଆମର ପୁଅକୁ ଛଟପଟ କଲୁ
ଦେଲୁନାହିଁ ଜମା ଶୁଆଇ ।
ଜଦ ତ ଜଦ ପୋହଲା ବଦ
ବଦ ଉଇଁରିଆ ମାଳ ।
ଆମ କୁନା କୁଣୀ ଖେଳବେ ହୋଲି
ରଙ୍ଗ ପିଚକାରି ମାରି ।



ନଡ଼ିଆ ଗଛରେ ନଡ଼ିଆ ଗଛ
'ତାଳ'ଗଛ ତୋ'ର ପଡ଼ଶା
ଗୁଆ ଗଛର ତୁ ମାଉସୀ ପୁଅ
ଆବୁଡ଼ା, ଖାବୁଡ଼ା, ଖଜୁରି ଗଛ ତୋ
ବନ୍ଧୁ, ବାନ୍ଧବଙ୍କ ସରସା ।
କଦଳୀ ଗଛ ତୋ ଗାଆଁର ।
ପବନଠୁ ଖାଏ ପାହାର ।



ଉଡ଼ା ଜାହାଜରେ ହୁଡ଼ାଜାହାଜ
ଉଡ଼ି ହୁଡ଼ି ଉଡ଼ି ଯାଆ ।
ଯେତେ ଯେତେ ଗାଆଁ-ସହର ଅଛି
ସବୁ ବୁଲି ଫେରି ଆ ।
ସେ ଆଡ଼େ ଅଛନ୍ତି କେତେ ମୋ ସାଥି
ତାଙ୍କର କଥାଟି କହ ।
ଆମ ଗାଁ ପାଖେ ବଡ଼ ପଡ଼ିଆ
ସେଇଠି ଟିକଏ ବସ ।



ଆମ କୁନୁମୁନି-କଥା କହେ ଶୁଣ
ହସେ କୁର୍ କୁର୍—ଚହେଁ ଜୁଳୁ, ଜୁଳୁ
ଚଲେ ଠୁକୁ ଠୁକୁ
ତାଟିଆଏ 'ଦଦ' ଧରି ପିଏ ଢୁକୁଢ଼ୁକୁ ।



ଆ ବଗଭାଇ ଟଙ୍କା ନେଇଯା
ଆମ 'ଜଗୁ' ପାଇଁ ମାଛ ଦେଇଯା ।
'ଜଗୁ' ଭଲପାଏ ସେହ୍ନ, ଖକୁର,
ବାଳିଆ, ଶେଉଳ, କଉ, ମାଗୁର ।
ଟଙ୍କା ନେଇକରି ବଜାର ଯିବୁ
ବଗୁଲୀ 'ପାଇଁକ ଶାଢ଼ୀ ଆଣିବୁ ।
ତୋ' ପାଇଁ ଆଣିବୁ କାମିଜ, ଲୁଗା
ବାଦାମ ଆଣିବୁ ଗୋଟିଏ ଠୁଙ୍ଗା ।
ନମିଳବ ଯେବେ କେବ୍ଣ୍ଡି-କଷ୍ଟି ।
ଦୁହେଁ ଯାକ ତା'କୁ ଖାଇବ ବସି ।



ଶୁନ୍ ଶୁନ୍ ଫଟକା ।
ଆମ ଅଜା ରୁଷିଗଲେ ଅଟକାରେ ଅଟକା
ଅଟକିଲେ ନାହିଁ ଅଜା ରଗିଗଲେ ଚୁଲ୍ ।
ଆମ ଆଈ ଆଣିବାକୁ ଯିବେ ତାଙ୍କୁ କାଲି ।
ସ୍କୁଟର୍ ଚଳାଇ ଏକା ଯିବେ ଆମ ଆଈ ।
ଲଡ଼ୁ, ଗଜା ନେଇଥିବେ ଅଜାଙ୍କର ପାଇଁ ।



ଛତୁରେ ଛତୁ-ମେଘ ଘୋଟି ଆସେ ନଈ ସେପଟୁ ।
ଛତୁରେ ଛତା-ବେଙ୍ଗୀଙ୍କ ଗୁନ୍ଦୁଆ-ବାଆଙ୍କୁ ବତା ।
କଥା ପାଇଁ ନଥା - ମଥାକୁ ଟିପା ।
ମାଟିର ଘରକୁ ଗୋବର ଲିପା ।
ପାଳୁଆ ଅଜାଙ୍କୁ ପାକେଇ ଆଈ ।
ନହେଲେ ସୁନ୍ଦର ଦିଶଇ ନାହିଁ ।
ଆଈଙ୍କ କୋଳକୁ ନାତୁଣୀ ନାଠ ।
ଯାତରା ବୁଲକୁ ସାଙ୍ଗରେ ସାଥି ।



ଆ' ଉଡ଼ୁଆ ବଣି ଚଢ଼େଇ ।
ପାଣି ପିଇଦବୁ ଡାଳ ଗଡ଼େଇ ।
ଭାତ ଖାଇଦବୁ ପେଟ ପୂରେଇ
ମୋ ସାଙ୍ଗେ ଖେଳିବୁ ନଟୁ ଘୂରେଇ ।
ଅରୁଆ ଚାଉଳ ସରୁଆ ଭାତ ।
ବାଛୁରିକୁ ଗାଈ ମାଇଲା ନାତ ।
ବାଛୁରି ଗୁଡ଼ିଲା ଭେଁ, ଭେଁ ରଡ଼ି ,
ଗଡ଼ି ଗଡ଼ି ଯାଏ ଶଗଡ଼ ଗାଡ଼ି ।
ଶଗଡ଼ ଗାଡ଼ିର ଦୁଇଟି ଚକ
ବୋଟିଏ ଗାଁରେ ଢନୋଟି ଠକ ।
ଠକ ଖାଇଗଲେ ଠୋକର ।
ହସି ପକେଇଲା ଜୋକର୍ ।



ଉଡ଼ ଉଡ଼ ଯାଆ ନାଲି ଗୁଡ଼ିଟିରେ
'ଜିତୁ' ଉଡ଼ାଉଚ ତୋତେ
ଉଡ଼ ସାରି ଆସି ଆକାଶ ରାଇଜ
ଖବର କହିବୁ ମୋତେ ।
'ଜିତୁ' ବସିଥିବ ସପଟି ପକେଇ
ହାତେ ଧରିଥିବ ବହି ।
ପାଠ ପଢ଼ୁଥିବ ମନକୁ ଲଗାଇ
ତା ପାଖକୁ ଯିବୁ ରହି ।

କହୁଥିବ କେମିତି 'ଭଦଭଦଳିଆ'
ତୋ ମାଥିରେ ନେଉଥିଲି ।
ଶଙ୍ଖ ଚିଲ ଭାଇ ହସ ହସ ହୋଇ
ତୋ କଥା ପଚାରୁ ଥିଲି ।



କଣ୍ଟି ଢାକୁଣ୍ଡି ।
କୁନା ଖେଳୁଥିଲା ଡାଳ ମାଙ୍କୁଡ଼ି ।
ଏ ଡାଳ ସେ ଡାଳ ଡେଇଁ ,
ଡେଇଁ ଡେଇଁ ଗୋଟେ କଚଡ଼ା ଖାଇଲା
ଦେଖୁଥିଲେ ବଡ଼ ଭାଇ ।
ବଡ଼ ଭାଇଙ୍କର ବିଚାର ଭାରି ।
ସେ ଦିନୁ କୁନାକୁ ଘରୁ ବାହାରକୁ,
ଯିବାକୁ ପାରିଲେ ନ ଦେଲେ ଛାଡ଼ି ।



ନଟେ, ପଟେଇ, ଚଟେଇ ।
ଆମ 'ଲୁଲୁ'ବାବୁ ବାଗୁଡ଼ି ଖେଳରେ
ସବୁଦିନ ଦବ ହଟେଇ ।
ବୋହୂଚୋର ଯେବେ ଖେଳିବ ।
ଖେଳରେ କିଏ ସେ ବଳିଯିବ ତାକୁ ?
କିଏ ଭଲା ତା'କୁ ଧରିବ ।



ରଜ ସଜ ବାଜ ବଡ଼ ମଉଜ
ସଜ କରିଦେବେ ନୂଆ ଗାଉଜ ।
କୁନ୍ଦିକ ହଳଦୀ ଦେବେ ଲଗେଇ ।
ମଥାରେ ଚନ୍ଦନ ଦେବେ ସଜେଇ ।
ବାପା ଆଣିଚନ୍ତି ସୁନାର ଚୂଡ଼ି ।
ଭାଇ କଣିଚନ୍ତି ଜାମାର ଯୋଡ଼ି ।
ମାଆ ରଖିଚନ୍ତି ନାଲି ଶବନ ।
ନୂଆ ଚପଲରେ କୁନ୍ଦର ମନ ।

ଆଣୁ କଣଚନ୍ଦ୍ର ନଡ଼ିଆ ଗଛ ।
ପୋଡ଼ ପିଠା, ମୁଢ଼ି, ଉଖୁଡ଼ା ଝଇ ।
ଖାଇ ନାଇ, କୁନ ସାଥି ମେଳରେ ।
ମାଢଠିବ ରଜ ଦୋଳି ଖେଳରେ ।



ବଣି ଚଢ଼େଇରେ ବଣି ଚଢ଼େଇ ତୁ
ଆଡ ଗଛେ ବସା କଲୁ ।
ପୁଅ, ଝିଅ ତୋ'ର ଏକା ରଦ୍ଧଚନ୍ଦ୍ର
ଆଧାର ପାଇଁକ ଗଲୁ ।
କୁନ ପିଲାଙ୍କର କୁନ କୁନ ପାଟି
କାନ୍ଦ୍ରଚନ୍ଦ୍ର ଚାଇଁ, ଗୁଆଁ ।
କିଏ ସେ କହୁଚ ଖେଳ ହେଲ ଘର
କିଏ ସେ ଖୋଜୁଚ ମାଆ ।



ଡେଙ୍ଗା ସର ସର ନଡ଼ିଆ ଗଛଟି
ଆକାଶକୁ ଟେକି ମଥା ।
ଦିନରେ ସୂରୁଯ, ରାତିରେ ଚନ୍ଦର
ସାଥିରେ କହୁଚ କଥା ।
ପଇଡ଼, ନଡ଼ିଆ ଖାଡ଼ ଦଉଚ ସେ
ଆମ କୁନ୍ ମୁନ୍ ପାଇଁ ।
ନଡ଼ିଆ ଗଛ ଯେ ବଢ଼ିଆ ଗଛ
ବାଟକୁ କରଚ ଛାଇ ।



ମେଘ ବରଷୁଚ ଟପର ଟପର
ନାଚୁଚ ବିଜୁଳି ନାନୀ ।
କୁନି ବଗିଚ୍ଚରେ ଦୋଳରେ ଝୁଲୁଚ
ଗୋଲାପ ଫୁଲର ରାଣୀ ।
ବେଙ୍ଗୁଲି ଡେଉଁଚ ଫଂକର ଫଂକର
କେଁ କଟ କଟ ଡାକ ।
ଲୁଲୁ ମୋ'ର ଏବେ ଶୋଇ ପଡ଼ିବନି
ବୁଜି ଆସିଲାଣି ଆଖି ।



ଦେଖରେ ଦେଖରେ କଇଁଛ ଦେଖ ।
ଖୋଳପା ଭିତରୁ କାଢ଼ିଛି ବେକ ।
ଥିରି ଥିରି ହୋଇ ଯାଉଛି ଚାଲି ।
ଆଡ଼େଇ ଦଉଛି ଗୋଡ଼ରେ ବାଲି ।
ବାଲି ତଳେ ଲୁଚି ଶୋଇବ ସିଏ ।
ଦେଖରେ ଦେଖରେ କଇଁଚ ଟିଏ ।



ଆ ଆ ରେ ବାଘ ଛୁଆ ଡାକୁଛି ତତେ 'ଛୁତୁ'
ତୋ ସାଙ୍ଗରେ ଖେଳି ସେ ତତେ କରିବ 'ଲୁତୁ' 'ଲୁତୁ' ।
ଶିକାରୀ ବେଶେ ବନ୍ଧୁକ ଧରି ତୋ ଉପରେ ବସି ।
ବଣ ରାଇଜ ବୁଲି ଆସିବ ଠୋ ଠୋ ହସି ହସି ।
ଚଗଲା ହେଲେ ସିଠିକ ତୋ'ର ମାରିବ ସିଏ ଗୁଣ୍ଟ ।
କାନକୁ ମୋଡ଼ି, ନାକକୁ ଘଷି ପଢ଼ାଇ ଦବ ପାଠ ।



କୁନା ଦୁଆରେ ଫୁଟିଛି ଫୁଲ
କୁନ ଦୁଆରେ ବାସ ।
କୁନ ଘରେ ଗାଈ ଦୁହାଳ
କୁନା ଘରେ ଗୁସ ।
କୁନ ଆଣିବ କ୍ଷୀର, ଚକ
ଗୁଡ଼ଲ ଦବ କୁନା ।
ଚାଲ, ହାଣ୍ଡି, ସବୁ କୁନାର
କିଛି ନ ହେବ ଊଣା ।
କୁନ କରିବ ଝିଲ୍ଲା ।
ଏମିତି ମିଶି ଖାଇବେ ଦୁହେଁ
ପଡ଼ର ଯିବ ଚର ।



ଦୂର ପରବତ ସୁନ୍ଦର ଦିଶେ ।
ମଥାଟି ତାହାର ଆକାଶେ ମିଶେ ।
ପାହାଡ଼ର ତଳେ ଯୋରିଏ ବାଲି ।
ହାତୁ ମାଛ ନେଇ ଉଡ଼ିଲା ଚାଲି ।

ଚଲରେ ଚଲ ତୁ ସିଆଣା ଝିଅ ।
ମାଛ ମୋ'ର ନେଇ ଗଲୁ ତୁ ଚୁଲି ।
ବୋଉ ଗାଳିଦେଲା କାନ୍ଧରେ କଣ ।
ବାପା ମୋଡ଼ିଦେଲେ ରାଗରେ କାନ ।
ସିଆଣା ପଣ ତୋ ଦେବ ଛଡ଼େଇ ।
ଅ, ଆ, ପାଠ ଦେବ ପଢ଼େଇ ।



'ଇଟିକଲ୍' ଆଉ 'ମିଟିକଲ୍'
ପଳେଇଲେ ଦୁନେ ଫିଟି କର ।
ଝିଙ୍କି ଦେଲେ ମୋ ବାଡ଼ି ।
ଖାଇଲେ ବେତ ମାଡ଼ ।



ଉଡ଼ା ଜାହାଜରେ ଉଡ଼ା ଜାହାଜ ରୁ
ଉଡ଼, ଉଡ଼, ଉଡ଼, ଯିବୁ ।
ବାପା ମୋ ଅଛନ୍ତି ଦରିଆ ସେପାରେ
ମୋ ଚିଠିଟି ତାଙ୍କୁ ଦବୁ ।
ସିଏ ଯେବେ ଦେବେ ଚିଠି କି ପତର
ସହଜ ଆସିବୁ ଆଣି ।
ଚାହିଁ ରହିଚ ମୁଁ ତୋହର ବାଟକୁ
ପହଞ୍ଚିବୁ ମନ ଜାଣି ।



ଟିକି ଚଢ଼େଇରେ ଟିକି ଚଢ଼େଇ
ସୁନା ଫୁଲ ତତେ ଦେବି ଗଢ଼େଇ ।
ଫୁଲର ମଝିଟି ପଥର ବସା ।
ଚାହିଁ ଚାହିଁ ଆଖି ହେଲାଣି କଷା ।
କଷାତ କଷାରେ ହରଡ଼ା କଷା ।
ଆଉ ସବୁ କଷା ଫସର ଫସା ।
ଫସର ଫାଟିଲା ପଡ଼ିଲା ଖସି
ଟିକି ଚଢ଼େଇଟି ଦେଏରେ ଧରି ।



ନାହଣ୍ଡି ଖଇରେ ନାହଣ୍ଡି ଖଇ ।
ମୋ ଲୁନା ବସିଛୁ ତୋ ବାଟ ଚାହିଁ ।
ନଈରେ ପଡ଼ିଚ ଅକାଳ ସୁଅ
ଶୁଖି ଗଲଣି ମୋ ଝିଅର ମୁହଁ ।
ଆଉ ପାଖରେ ତା ଫଗାଡ଼ ଗାଆଁ ।
ଯିବ ପଣ୍ଡ ସିଏ ଫିଟା ତୋ ନାଆ ।
ପାଣ୍ଡ କର ଡଆ ନକର ଡେରି
ଆଜି ଗଲେ କାଲି ଆସିବ ଫେରି ।



ଅଟର, ମଟର, ସଟର ସେଁ
ସାତ ଚକୁଳି ଚହଟ ଚେଁ ।
"ଗୋଟିଏ ଖାଇବି' କହିଲା ଲୁନା ।
"ମୋ ଭାଗ ଦୁଇଟି" କହିଲା ମୀନା ।
ବାପା, ମାଆଙ୍କର ଆଉ ଗୁରେଟି ।
ବଳେଇ ଚାହିଁଲା ଆଖି ତରାଟି ।
"ତା' ଭାଗ ଚକୁଳି କୁଆଡ଼େ ଗଲା ।
କଅଣ ଆଉ ସେ ଖାଇବ ଭଲା ।



ଦୀପାବଳି ଦିନ "ଜରୁ ବାବୁ ପାଇଁ
କେତେ ଆଣିଥିଲେ ବାଣ ।
ତାଳ ଫଟକାର ଡୋ ଡୋ ଶୁଣି
ବୁଜି ଦେଲା ସିଏ କାନ ।
ଝର, ଝର, ଝର ଚଛବାଣ ଦେଖି
ତା'କୁ ସେ ଧରିଲା ବାନ୍ଧି ।
'ଫୁଲଝର' ଆଉ 'ଡ଼ିଆସିଲି' ବାଣ
ମାରିଲା ସେ ଧାଇଁ ଧାଇଁ ।



ଚେଙ୍ଗ, ବେଙ୍ଗ ଦୁହେଁ ଫଗାଡ଼ି ବସିଲେ
ବାରି ଗଡ଼ିଆର କୂଳେ ।
ଚେଙ୍ଗର ପିଠିରେ ଲଦି ହୋଇ ବେଙ୍ଗ
ଗଡ଼ିଆ ଗୋଟାକ ବୁଲେ ।

ଗଡ଼ୁଆରେ ଗୋଳା ପାଣି ।
'ଟୁଙ୍ଗୁଡ଼ି'ର ପୁଅ ଟୁଣ୍ଡି ପଳେଇଚି
"ଟୁଙ୍ଗୁଡ଼ା ଯାଇଚି ଆଣି ।
'ନଙ୍ଗୁଡ଼ା' ପୁଅର ନାଆଁ ।
ବାଟ ଚୁଲି ଚୁଲି ଶୋଇ ଯାଇଚି ସେ
କରିଦେଇ ଏତ୍ତେ ଆଁ ।



ଶଂଖି ଝିଲେଇଟି ଅଇଲା ।
ଏଣିକି ତେଣିକି ଚାହିଁଲା ।
ଝରକା ବାଟେ ସେ ଡେଇଁଲା ।
କ୍ଷୀର ବଟାଟିକି ପାଇଲା ।
ଆଖି ବୁଜି ବସି ପିଇଲା ।
ମାଛ ଭଜା ଥିଲା ଖାଇଲା ।
ଚୂଲି ପାଖେ ଯାଇ ଶୋଇଲା
ଆମ 'ଜଗୁ' ଦେଖି ଧାଇଁଲା ।
ବାଡ଼ି ଧରି ତା'କୁ ମାଇଲା ।
ଜେଜେ ମାଆ ଦେଖି କହିଲା
"ତା'ର କି ଦୋଷ ହୋଇଲା" ?
ତୋ 'ବୋଉ'ତ ଖୋଲା ଥୋଇଲା-
ପଶୁ ଜାତି ପିଏ ଖାଇଲା " ।
ଏତିକରେ କଥା ସରିଲା ।



ଘୁମୁ ଘୁମୁ ଘୁମୁରେ ପାରି
ପାରି ଛଡ଼ିଗଲୁ ନଦେଲୁ ଧରି ।
ପାରି ଉଡ଼ିଗଲୁ କୁଆଡ଼େ କାହିଁ ।
ଦିନ ଚାଲିଗଲା ତୋ' ବାଟ ଚାହିଁ ।
ମାଡ଼ି ଆସିଲାରେ ଅନ୍ଧାର ରାତି ।
ପାଖେ ସେଠି ତୋ'ର ନଥିବେ ସାଥି ।
ଖରି ଯାଇ ପଡ଼ି ଗଲାଣି ତରି ।
ଏକୁଟିଆଟି ତୁ ଉଡ଼ିବୁ ପରି ।
ଝୁରି ହେଉଚି ମୁଁ ତୋହର ପାଇଁ ।
ତୋ ଲାଗି ଆଖିରେ ନିଦ ମୋ ନାହିଁ ।



ଗଉ, ଗଉ, ଗଉ, ନ ଗବ ତୁ ଆଉ
ଆରେ ମୋ ଡାମରା କୁଆ' ।
ଅଧାର ଦଉଚ ଟାଇ ଦେଇ ତା'କୁ
ବେଗେ ଉଡ଼, ଉଡ଼ି ଯାଆ ।
କଟକ ସହର 'କାଠ ଯୋଡ଼ି' କୂଳ
ସେଇଠି ମୋ ମାମୁଁ ଘର ।
ସେଇ ଘରଟିର ମଝି ଅଗଣାରେ
ବସିଥିବେ ମାଇଁ ମୋର ।
ବଦେଶରୁ ଫେଶ ଆସିଥିବେ ଯେବେ
ମାମୁଁ ମୋର କୁଟୀ ଦନେ
କହିବ କାହରେ ! ତାଙ୍କ କଥା ମୋ'ର
ପଡ଼ୁଚ ବହୁତ ମନେ ।



ଆ'ରେ ମେଘ ଆ' ଆ'ରେ ମେଘ ଆ',
ଝିପୁରୁ ଝିପୁ, ଝୁପୁରୁ ଝୁପୁ ଗୀତଟି ତୋ'ର ଗାଆ ।
ହଉଚ ମତେ ଗରମ ଭାର,
ଖରାରେ ମୁଁ ପାରୁନ ଗୁଲ ।
ଦେହରୁ ମୋର ବହୁଚ ଝାଳ ।
ନଦ କମାରୁ ହେଉନ ଭଲ,
ହେମାଳ ବାଆ ସାଥିରେ ଆଣି କରଣି ଦେଇ ଯାଆ
ଆ'ରେ ମେଘ ଆ—



ନାଲି ଗୁଲୁ ଗୁଲୁ ସାଧବ ବୋହୂ,
ନାଲି ପାଟ-ପିନ୍ଧ କୁଆଡ଼େ ଯାଉ ?
ମାରେ ଘଡ଼ଘଡ଼ି ମାରେ ବିଜୁଳି,
ଝର ଝର ପଡ଼େ ବରଷା ଝଶ ।
ପାଣି କାଦୁଅରେ ପୂରଣଚ ବାଟ,
ଅସନା ହବ ତୋ ନାଲିଆ ପାଟ ।
ଓଦା ହେଲେ ତତେ କରିବ ଜର,
ଜରକୁ ତୋହର ନାହିଁକ ଡର ?



ଶୀତ ହେଲେ ଘର ଖରାରେ ବସିବା ଭଲ,
ଛାଇକୁ ଆସିବା ଦାହରୁ ବହିଲେ ଝାଳ ।
ବରଷା ହୋଇଲେ ଛତାଟି ମଥାରେ ଦେଇ,
ଚାଲୁଥିବ ଯେବେ ଓଦା କେବେ ହେବ ନାହିଁ ।



ଟଡ଼ିଆ ପାଗ
ଏମିତି ପାଗକୁ ବାଦାମ୍ ବାଗ ।
ବାଦାମ ସାଙ୍ଗକୁ ମୁଢ଼ି ନଡ଼ିଆ ।
ବାରମଜା ଥିଲେ ଘର ବଢ଼ିଆ ।
ଗରମା, ଗରମ ପିଆଜି, ବରା ।
ଟକଲା ପାଟିରେ ଫୁଟେ ଟାକରା ।



ଅଜାଟିର ନାଁ 'ନଟିଆ'
ନାତିଟିର ନାଁ 'ହୁଟିଆ' ।
ଘରଟି ତାଙ୍କର 'ପଟିଆ'
'ହୁଟିଆଟି' ଭଟ କଟିଆ ।
ଦରାଣ୍ଡେ ଅଜାଙ୍କ ବଟୁଆ ।
ଦୁନିଆଁ ବାହାର ମଠୁଆ,
ଖାଇ ସେ ଧୂଏଁନା ତାଟିଆ ।
ଧରୁଥାଏ ଘର ଚଟିଆ,
ସଞ୍ଜ ହେଲେ ଧରେ ଖଟିଆ ।
ଅଜା କହିଲେ 'ରେ ହୁଟିଆ'
ହେଲୁ ନାହିଁ ତୁ'ତ ପାଠୁଆ ।
ଓଳେଇବୁ କ'ଣ ଝାଟୁଆ ?
ହସି କହିଲା ସେ 'ହୁଟିଆ'
"ନପଢ଼ିଲେ ହେବ ନାଟୁଆ ।
ନହେଲେ କଦଳୀ କାଠିଆ"
ଚାଷକର ହେବ ହାଟୁଆ ।



ଆମର 'ଛବି'ଟି ସୁନା ନାକୀ ଝିଅ
ସତେ କି ସରଗ ଚାନ୍ଦ ।
ଟାଣ କଥା ପଦେ ଶୁଣିଲେ କାହାଠୁ
ମାଡ଼େ ତା'କୁ ଭାରି କାନ୍ଦ ।
ବାପା, ଭାଇ, ମାଆ, କାହାଠାରୁ ଯେବେ
ମିଠେଇଟିଏ ସେ ପାଏ ।
କାନ୍ଦୁରି ମୁହଁ ତା ହସ ହସ ହୁଏ
ନଠେଇ କରି ସେ ଖାଏ ।



ଆମ କୁନ୍ମୁନୁ ଭାରି ଟାଉକୀ ।
ଉଖୁଡ଼ାରେ ତା'ର ଭାରି ସଉକୀ ।
କୁକୁଡ଼ା ଦେଖିଲେ ଡରେ ।
ଟିକି ହାତଟିରେ ବାଡ଼ିଟିଏ ଧରି
"ହାଉସ୍" "ହାଉସ୍" କରେ ।



ମୁନ୍ନି ବାହାଘର, ଭାରି ଖୁସି ହୋଇ
ଘର ସଜାଡ଼ୁଛି ପୁଷ୍ପି ।
ଲୁଗା ଯୋଡ଼ାଟାଏ ମିଳିଲାନି ବୋଲି
'ଖାଲୁଆ' ବସିଛି ରୁଷି ।
ଦୋଳ-ମକୁଟକୁ ଲଗାଇ ମଥାରେ
ମୁଷା ହୋଇ ବରବେଶ ।
ମୁନ୍ନିର ମନରେ ଖୁସି ନାହିଁ ଜମା
ଯିବ ବୋଲି ଦୂର ଦେଶ ।
ଘର, ଦେଖରର ସଜଡ଼ା ଚାଲିଛି
ବାଜୁଛି ମହୁରୀ, ବାଜା ।
ବାହା ସରିଗଲା, ବର ବାହୁଡ଼ିଲା
ସଭିଙ୍କର ମନ ତାଜା—



କୋଇଲି ପୁଅର ଜନମ ଦିନରେ
କାଉ ଦିଏ ହୁଲି ହୁଲି ।
କୁନା, କୁନି ଦୁହେଁ ପାଠ ପଢ଼ା ଧାରି
ଆସୁଛନ୍ତି ଝୁଲି, ଝୁଲି ।

ବାର ପଛଆଡ଼େ ବାଉଁଶ ବୁଦା ଲୋ
କାଟିଗଲ ସବୁବତା
'ରୁବି' ଯାଉଥିଲା ଖରାଟାରେ ଚାଲି
ଭାଇ ଧରିଥିଲେ ଛତା ।
ଛତାରେ ରେଶମ କନା ।
ଢନ୍ନ ରଥେ ବକେ ଢନ୍ନ ଠାକୁରଟି ମନଥସ୍ତ କରି ଅନା ।



ଶୀତ ସକାଳରେ ଜେଜେଙ୍କ ସାଥିରେ
କୁନା ପୋଉଁଥିଲା ଖରା ।
ମାଆ ଥୋଇଦେଲେ ଥାଳିଟିରେ ଆଣି
ଚକୁଳି, କାକରା, ବରା ।
ଜେଜେ-ନାତି, ଦୁଇଜଣ ।
ହାତ ମୁହଁ ଧୋଇ ହସ ଖୁସି ହୋଇ
ଖାଇବାରେ ଦେଲେ ମନ ।



ବଗ ବଗୁଲି
ଇଟା ଥୋଇ ଦୁହେଁ ପାରିଲେ ଚୁଲି ।
ରାନ୍ଧିଲେ ଶେଉଳ ମାଛର ଝୋଳ ।
ଝୋଳ ଦେଖି ବଗ ହୋଇଲା ଭୋଳ ।
ସବୁଯାକ ଦେଲା ଖାଇ ।
ମୁହଁ ଧୋଇ ଧାଇ ଉଡ଼ି ପଳେଇଲା ।
ବଗୁଲି ବସିଚି ରାନ୍ଧି ।



'ପୁଷି' ଆଉ 'ଭାଲୁଆ'
ପୁଷି ଖାଏ 'ରେନ୍ଧମାଛ'—'ଭାଲୁଆ'ର ହାଲୁଆ
ଯାତ ଦେଖିବାକୁ ଦିନେ ଦୁହେଁ ଯାକ ରାନ୍ଧିଲେ ।
ଚଉକି ଉପରେ ବସି ଟେବୁଲରେ ଖାଇଲେ
"ରେନ୍ଧ ମାଛ" ହାଲୁଆ ।
ସବୁ ସରିଗଲା ପଛେ ପେଟ ଦିଶେ ଖାଲୁଆ ।



କଳା ବୁଦା ତଳେ 'ବାଲୁଆ' କୁଆ ।
ଡାକ ଦେଉଥିଲେ ହୁକ୍କା—ହୁଆଃ
ବସ୍ତା, ଖାତା, ମାନ ହାତରେ ଧରି
ଭୂଆ ଯାଉଥିଲା ଇସ୍କୁଲ କରି ।
ଡାକିଲା "ଆସରେ ପଢ଼ିବ ପାଠ
ଇସ୍କୁଲ ଏଠାରୁ ଅଳପ ବାଟ ।



ବାହା ବାହା ବାଃ କୁନିର ଆଜି
କଣ୍ଢେଇ ବାହାଘର ।
'ମିନି'ର ଝିଅ କନିଆଁ ଆଉ
'କୁନି'ର ପୁଅ ବର ।
ଶଙ୍ଖ ବାଜିବ, ବାଜା ବାଜିବ
ପଡ଼ିବ ହୁଳ ହୁଳି ।
ବୋହୂକୁ ନେଇ ଆସିବ ବର
ଦୋଳାରେ ଝୁଲି ଝୁଲି ।
ବୋହୂ ପରଶା ଖାଇବ 'କୁନି'
ପିଢ଼ା ପକେଇ ବସି ।
ହାତଟି ଧୋଇ ପଡ଼ିବ ଶୋଇ
ବୋହୂଟି ଦବ ଘସି ।



ବାରି ପଛଆଡ଼େ ଗମ୍ଭୀର କୂଅ
କୂଅ ପାଖେ ଖେଳ ପୁଷ୍ପିର ପୁଅ ।
ପୁଅ ଦେଖୁଥିଲା ଫୁଲଟି ପରି
ଜନ୍ଦା କାମୁଡ଼ିଲା ରଟ୍ କରି ।
କଇଁ କେଇଁ ହୋଇ କାନ୍ଦିଲା ପୁଅ
ମେଘ ଧାର ପରି ଝରିଲା ଲୁହ ।
ପୁଅର ଲୁହକୁ ପୋଛିଲା ମାଆ
କୋଳରେ ବସାଇ କହିଲା "ଆହା" !
ଖିରି କରିଥିଲା ଗୁଡ଼ଳ ଆଣି
ଖୋଇଦେଲା ପୁଅ ମନକୁ ଜାଣି ।
ଦୋଳିରେ ବସେଇ ଝୁଲେଇ ଦେଲା
ତେବେ ଯାଇ ପୁଅ ଚୁପ୍ ହେଲା ।



ଗଛତ ଗଛ—ନଡ଼ିଆ ଗଛ
ଗଛରୁ ପଇଲା ଦାଆ ।
ପାଟ କନାଟିଏ କାନ୍ଧରେ ପକେଇ
କୀର୍ତ୍ତନ କର ଯାଆ ।
ଖୋଳ କରତାଳ ବଜା
ଘଣ୍ଟି ବଡ଼ଦାଣ୍ଡେ ନାଚ ନାଚ ଯାଆ
ଦେଖିବେ ଠାକୁର ରଜା ।



ଆଷାଢ଼ ମାସରେ ଫୁଟଇ କଆ
ଚଗଲା ଗୁଣ୍ଡୁଚି ମାରୁଛୁ ଡିଆଁ ।
ମାଡ଼ ଆସିଲାଣି ବରଷା ବାଆ
ଆ'ରେ ଗୁଣ୍ଡୁଚି ଘରକୁ ଆ' ।
ଲୁଙ୍କି ଯାଇ ଯେବେ ଗଛ ତୋହର
ତଳେ ଲୋଟିଯିବ ବସାଟି ତୋ'ର ।
ଆମଘରେ ଶେଯ ଦେବି ମୁଁ ପାରି
ଖାଇ, ଶୋଇଯିବୁ ଢୁଙ୍କୁଡ଼ି ମାରି ।



ଆମ ବୁଅ ଗଲେ ପାଠ ପଢ଼ିବାକୁ
ଘର ଲାଗେ ଖାଲି ଖାଲି ।
ଶୁଭିଯାଏ ତା'ର ହସ ହସ କଥା
'ଦିଶୁଥାଏ ତା'ର ଗୁଲି ।
ଘଣ୍ଟାକ ଲାଗଇ ଯୁଗଟାଏ ପରି
ତା ଫେରି ବାଟକୁ ଚାହିଁ ।
ସିଏ ଆସିଗଲେ ଆମ ଘରେ ସତେ
ଜହ୍ନକ ଆସଇ ଉଇଁ ।



ମୃଷା ଖାଉଥିଲା ଆରିଷା ପିଠା
ବଲେଇ ମାଗିଲା "ଦେଏ ତୁ ଦ'ଟା ।"
କିଣିଚ ମୁଁ ନୂଆ ମଟର ଗାଡ଼ି
ସହର ବୁଲୁଚି ତହିଁରେ ଚଢ଼ି ।
ତତେ ମୁଁ ସାଙ୍ଗରେ ବୁଲେଇ ନେବି ।
ନୂଆ ନୂଆ ଚିଜ ଦେଖେଇ ଦେବି ।



ଡାଳରେ ଥିଲା ପଣସ ସତେ ଯେମିତି ବୁଢ଼ା
ବସିଥାଏ ଖୁସି ମୂଡ଼ି ଛାଞ୍ଚୁଡ଼ା ।
ହନୁ ଆସି ଦିନେ ଛିଣିଲା ମୁଣ୍ଡି
ଦେଖୁ ଦେଖୁ ତା'କୁ ବୁଢ଼ାର ବୁଢ଼ୀ ।
ବାଡ଼ିଟାଏ ଧରି ଆସିଲା ଧାଇଁ
ହନୁ ପଳେଇଲା ବୁଢ଼ୀକୁ ଚାହିଁ ।



ମେଘରେ ମେଘ ପାଣି ଦେଏ ।
ମାଟି ସେ ପାଣି ଶୋଷି ନେଏ ।
ଶୋଷି ନେଇ ଗଛ ଉଠା ।
ଫଳରେ ଘୂରୁ ଯେତେକ ଚୋଟା ।
ଆମର ପୁଅ ଖାଉ ତା ଫଳ ।
ବଢ଼ୁ ତାହାର ଦେହର ବଳ ।
ଶକତ ହଉ ସତେକ ଲୁହା ।
ପାଳନ୍ତି ଯାଉ ଖୀରର ଛୁଆ ।



ଦେଖରେ ଦେଖ ଶୁଆ ।
ଛକିଛୁ ତା'କୁ ଭୁଆ ।
ଭୁଆର ଦିହ କଳା ।
ପିନ୍ଧିଚ ଜାମା ଧଳା ।
ପାଦରେ ବଳା ତା'ର ।
ବେକେ ତୁଳସୀ ମାଳ ।
କପାଳେ ଠିଆ ଚିତା ।
ଜପୁଚ ରାମ ସୀତା ।
କହିଲା ଦେଖି ଶୁଆ ।
ଇଏ କି କଥା ନୂଆ !



ଆମର ପୋଷା ପୁଷି
ମନଟି ତା'ର ଖୁସି ।
ମୂଷାଙ୍କ ସଭା ହବ ।
ସିଏ ସେଠାକୁ ଯିବ ।

ଗ୍ରେକ ଲାଗିବ ଯେବେ ।
ସେ'କ ଗ୍ରୁଡ଼ବ କେବେ ? ।
ମୂଷା ଗୋଟିଏ ଧର ।
ଧାଇଁବ ଚଟ୍ କର ।



ଲଡ଼ୁ ଗୋଟିଏ ନେ'ରେ 'କକ' ଲଡ଼ୁ ଗୋଟିଏ ନେ' ।
ପୁଅର ବଲ୍ ହଜି ଯାଇଚ ଖୋଜି ଆଣି ତୁ ଦେ ।
ମାଛ ଖଣ୍ଡିଏ ନେଏ ଲେ ପୁଷି ମାଛ ଖଣ୍ଡିଏ ନେ ।
ପୁଅ କାନ୍ଦୁଚ ଅଝଟ ହୋଇ ବୁଝେଇ ତା'କୁ ଦେ ।
ଘାସ ବଡ଼ାକ ଖା'ରେ ଘୋଡ଼ା, ଘାସ ବଡ଼ାକ ଖା ।
ପୁଅକୁ ତୋ'ର ପିଠି ଉପରେ ବସାଇ ବୁଲି ଯା ।
ପେଜ ସାଙ୍ଗରେ ପିଡ଼ୁଆ, ଚୂନ, ଖାଇ ଦେଏ ତୁ ଗାଈ ।
ବାଲ୍ଟି ଭରି କ୍ଷୀର ଦୁହିଁବ ଆମର ପୁଅ ପାଇଁ
ଆ ଚଢେଇ, ଆ ଭଅଁର- ଆ ପରଜା ପଢ ।
ସଭିଏ ତୁମେ ଆମ କୁନାର ଖେଳା, ବୁଲାର, ସାଥି ।



ଦଳି ଗୋଡ଼ିଆ ବଗ
ବୁଲଇ ଡଗ ଡଗ ।
ମାଛକୁ ଥାଏ ଛକ ।
ପଡ଼େ ନାହିଁ ସେ ଅଙ୍କ ।
ଦେଖିଲେ ଗୋଟେ ଟାଆଁକୁ କରି ଗିଳି ଦିଏ ସେ ଆଗ ।



ନେଉଳ ନାକରେ ଗୁଣା ।
ବଳେଇ କରୁଚି ବିଅଁ ପୂଜା ବସି ।
ମୂଷା ଧୂପ ଦିଏ ଝୁଣା ।
ଚୁଚୁନ୍ଦୁରୀ ଦୀପ ଜାଳେ ।
'ଡମରୁ କାଉ'ର ଆଖି ଲାଖିଅଛି
ଲଡ଼ୁ, ଗଜା, ଭୋଗଠାରେ ।



ବଗ ଯାଉଥିଲା ନଈକି ଗାଧୋଇ
ଧରିଆଣିଥିଲା ମାଛ ।
ବଗଦ କରିଲା ବଗୁଲୀକୁ ଡାକି
"ସଅଳ, ସଅଳ ଚାଛ ।"
ବଗୁଲୀ ବାଛୁଲା ବସି ।
ମାଟିଆ ଚଲଟା କେମିତି ଦେଖିଲା
ଝାମ୍ପି ନେଇଗଲା ଆସି ।



ମୋ ମୁନ୍ନା ଖେଳିବ ହୋଳି ।
ଅବିର ମୁଠାକ ଅଜା-ଆଈଙ୍କର
ମୁଣ୍ଡରେ ଦେବ-ସେ ବୋଳି ।
ଆସିଗଲେ ତା'ର ସାଥି ।
ପିଚକାରୀ ଧରି-ରଙ୍ଗ ପାଣି ଭରି
ଖେଳରେ ଯିବ ସେ ମାତି ।



ଦୁଇଟି ଭାଇ ଦୁଇଟି ବୁଢ଼ା ।
ଜଣେ ଟେକାଏ ଚୂଡ଼ା ।
ଜଣେ ଖାଏ ଆଶପା ।
କେହି ନାହିଁ ତାଙ୍କ ଭରସା ।
ଦୁହେଁ କରିଲେ ଚାଷ ।
ଦୁହେଁ ବାଛିଲେ ଘାସ ।
ଅମଳ କଲେ ଧାନ ଗହମ
ଚଳିଲେ ବାରମାସ ।



ଧୋ'ରେ ବାଇଆ ଧୋ'
ଯେଉଁ କିଆରୀରେ ଗହଳ ଧାନରେ
ସେଇ କିଆରୀରେ ଶୋ—
ଆମ ପୁଅ ତତେ ଡାକିବ ଯେବେ ।
ଛୁଟି ଆସିବୁ ତୁ ସକାଳ ତେବେ ।
ମଣି ଅଗଣାରେ ଚାରିବ ସପ ।
ଜେଜେମା କହିବେ ଶୁଣିବ ଗପ ।



ବେଙ୍ଗୁଲି ବେଙ୍ଗୁଲି ଦେଏ ଲୋ ପାଣି ।
ମାଆ ରଖିଚନ୍ତି ଲାକର ଗୁଣି ।
ବାପା ଆଣିଚନ୍ତି ନମ୍କି, ଗଜା ।
କେକେ କଣିଚନ୍ତି କଟକୀ ଖଜା ।
ଖୁଡ଼ୀ ଭଜିଚନ୍ତି ଗରମ ମୁଢ଼ି ।
ମୁଆଁ ବଳିଚନ୍ତି ଜେଜେମା ବୁଢ଼ୀ ।
ରୁଉ, ମୁଁଉ ଦୁହେଁ ଖାଇବା ବସି ।
ବାରକୁ ଚୋଳିବା କାକୁଡ଼ି କଷି ।



ଅଳ୍ପ ପତର କି ସାରୁ ପତର ଲୋ
ପବନ ହଲାଏ ମଥା ।
କୁନି ଯାଉଥିଲା ବରଷା ବେଳେ ଲୋ
ଧରିଥିଲା ନାଲି ଛତା ।
ଛତା ବୁଜି ଦେଇ ରଖ ।
ମାଆ ଭାଜୁଚନ୍ତି ନଈ ଇଲିସିଲୋ
କୁନା ପାଟି ଟକ ଟକ ।



ଯାହାକୁ ଯିଏ ।
ଆମ କୁନି ପାଇଁ ଖେଳନା ଟିଏ ।
ଘୁନା ପାଇଁ ଫୁଲ-ଭୁଜାକୁ-ମିଠା
ବାହ୍ମା ବରଡକୁ ଆରିଷା ପିଠା ।
ଗଛ ପାଇଁ ଫଳ-ଗୁଟକୁ ପାଠ
ଗୃଷ ପାଇଁ ହଳ 'ନାଆ'କୁ 'ଘାଟ' ।
'ପାନ' ଖାଇବାକୁ 'ଗୁଆ'ର ଲୋଡ଼ା
ଖେଳା ପାଇଁ ହଳା-ଗୁଳକୁ 'ନଡ଼ା' ।
'ଶୀତ' ପାଇଁ ଶେଯ 'ପୁଷ'କୁ ମୁଆଁ
ଗାଈ ପାଇଁ ପେଜ 'ମଶା'କୁ ଧୂଆଁ ।
ଘୋଡ଼ାଲାଗି ଘାସ-ଯୋଗୀର ଥାଳ
କ୍ଷେତ ପାଇଁ ଗୃଷ ଚୂଲିକୁ ଜାଳ ।



"ଉଠ୍‌ରେ 'କାଳିଆ' ଘାସ ଖାଇବୁ
ଘାସ ଖାଇସାରି ବିଲକୁ ଯିବୁ ।
ବିଲକୁ ଗଲେ ତୁ କରିବୁ ହଳ,
ଟାଣ ମାଟି ହେବ ଉପର ତଳ ।
ନରମ ମାଟିରେ ଧାନ ବୁଣିବା
ଧାନ ପାଚିଗଲେ କାଟି ଆଣିବା ।
ଧାନରୁ କରିବା ଚାଉଳ ଗୁଣ୍ଡା
ଗୁଣ୍ଡା ପେଜ ଖାଇ ହବୁ ତୁ ହୁଣ୍ଡା ।"



ମିଆଉଁ ମିଆଉଁ ବିଲେଇ ବୋବାଏ
କୁକୁର ବୋବାଏ ଭୋ ।
କଥା ବୁଢ଼ା ଚଲେ ବଳୁଆ ଘଢରେ
ଭୁକ ଉଠେ ହୁକେ ହୋ ।
କା'ଆ, କାଆ, କାଆ 'କାଉ'ସ୍ୱରଦଏ
'କୋଇଲି'ର କୁହୁ-କୁହୁ
ଆମ କୁନା କଥା ଲଗେ ଏଡ଼େ ମିଠା
ସତେକି ଅସଲ ମହୁ ।



ସବଳ କୁକୁଡ଼ା ସବଳ କାଉ
କୁକୁର ଡାକଲ ଭ୍ୟାଉଁ ଭ୍ୟାଉଁ ।
କୁନ ବାଛୁରିଟି ହମ୍ବା ରଡ଼ିଲା
ମୋ ପୁଅ ନିଦରୁ ଉଠି ପଡ଼ିଲା ।
ଦେଖିଲି ଆକାଶେ ଚାହିଁ
ସୂରୁଯ ମାରୁଚ ଖରା ଫୁଲାଝର
ଅନ୍ଧାର ଗଲଣି କାହିଁ !



ରେଲଗାଡ଼ି ଗାଏ ଗୀତ-ଛୁକ୍ ଛୁକ୍ ଛୁକ୍ ।
ଯାଏ ମାଡ଼ି ଧୂଆଁ ଗୁଡ଼ି ଭୁକ୍ ଭୁକ୍ ଭୁକ୍ ।
'କାଠହଣା' କାଠ ହାଣେ ଠୁକ୍ ଠୁକ୍ ଠୁକ୍ ।
ପାଣି କୂଳରେ ବେଙ୍ଗ ଡ଼ିଏଁ ଫୁକ୍ ଫୁକ୍ ଫୁକ୍
ପଡୁଲେ ମେଘ ବରଷା ଶୁଭେ ଟୁପ୍ ଟୁପ୍ ଟୁପ୍ ।

କାନ୍ଦିଲେ 'କୁନା' ବାପା କହନ୍ତି ଚୁପ୍ ଚୁପ୍ ଚୁପ୍
ହୋଟେଲେ ବସି ଗଧିଆ ପିଏ କୋବ, ଚକୋଲେଟ-ସୁପ୍ ।

□

'ପୁଚ୍ଚି'ର ଝିଅ ଲୁସି
ବସିଚି ଆଜି ରୁଷି ।
ଶୁଖି ଯାଇଚି ମୁହଁଟି ତା'ର
ଝରି ଯାଉଚ୍ଛି ଲୁହର ଧାର
ଦେ'ରେ ଜଗୁ ପିଠା ଗୋଟିଏ
ଖାଇ ସେ ହେଉ ଖୁସି ।

□

ହେଇ ଦେଖ ଗୁଣ୍ଡୁଚି
ପିଠାଟିଏ ଖାଇବାକୁ ଲୁଚି ଲୁଚି ଭଣ୍ଡୁଚି ।
ଆମ ପୋଷା ବିଲେଇ
ମ୍ୟାଉଁ ମ୍ୟାଉଁ ଚିଲେଇ
ଧାଇଁଗଲା ଧରିବାକୁ ମୂଷା ଗଲା ପଳେଇ ।
ଗଛରେ ସେ ଚଢ଼ିଲା
ପାଚିଲା କୋଳି ଗୁଡାକ ଟପ୍, ଟାପ୍ ଝଡ଼ିଲା ।

□

ଉଡ଼ା ଜାହାଜ ଉଡ଼୍ ରେ
ବୁଡ଼ା ଜାହାଜ ବୁଡ୍ ରେ ।
'ଜଗୁ'କୁ ମୋ'ର ସାଥିରେ ନେଏ
ଦୁନିଆଟାକୁ ଦେଖେଇ ଦେ' ।
ଦରିଆ ତଳ ବୁଲେଇ ଦେ,
ସରଗ ଦୋଳିରେ ଝୁଲେଇ ଦେ ।
ସ୍ୱର୍ଗ, ମୋର ସାଙ୍ଗେ ମିଳେଇ ଦେ
କୁରୁ କୁରୁ କରି ହସେଇ ଦେ,
ମୋ କୋଳରେ ଆଣି ବସେଇ ଦେ' ।

□

ଧଳା ଘୋଡ଼ା, କାଳିଆ ଘୋଡ଼ା, କସରା ଘୋଡ଼ା ଆସ
ଆମ 'ବାବୁନ' ତୁମରି ପାଇଁ ଆଣି ଦେଇଚି ଘାସ ।
ପେଟେ ପେଟେ ଖାଆ ।
ବାବୁନ, କୁନ, ମିନଙ୍କି ଧରି ସହର ବୁଲି ଯାଆ ।

□

ଘଣ୍ଟା ଖୁଲଇ ଟିକ୍ ଟିକ୍
ଆମ ପୁଅର କାମଟି ଠିକ୍ ।
ଅସଲ୍ ସତ କଥାଟି ତା'ର
କମା ସେ କାନ୍ଦେ ନାହିଁ ।
ଝୁଲଇ ଦିଏ ମନ୍ଦ ଝରଣା
ବସିଲେ ଗୀତ ଗାଇ ।
ମାଆଙ୍କ ସଙ୍ଗ ଲଗାଏ ନାହିଁ
କମାରୁ ଝିକ୍ ଝିକ୍ ।
କୁନ ପାଦରେ ଗଡ଼ାଇ ବଲ
ହସଇ ଫିକ୍ ଫିକ୍ ।



କହୁଚ ଚଇତ ବାଆ ।
ମୋ 'କରୁ' ଯାଉଚ ବରବେଶ ସାଜ
ଚମକ ଉଠୁଚ ଗାଆଁ ।
ଝୋପି, ଝୋପି ତାର ମଥାରେ ଚନ୍ଦନ ଗଳାରେ ଗଜରାମାଳ ।
ଧୋତି, ପଞ୍ଜାବୀରେ ସୁନାର ବୋତାମ, ଆଖି କରେ ଝଲମଲ ।
ବାଜେ ଭଲ ଭଲ ବାଜା ।
କାର୍ ଭିତରେ ମୋ କରୁ ବସିଅଛୁ ସତେକ ଗୋଟିଏ ରଜା ।



ମେଘ ହେଲେ ଦିଏ ବିଜୁଳି ହସି
'ମୁନ୍ନା' ହସେ କାଠ ଘୋଡ଼ାରେ ବସି ।
ପାଣି ପିଇ, ଦାନା ଖା'
କାଠର ଘୋଡ଼ା ଜଲଦ ଧାଆଁ ।
ଡେର କରିଲେ ତୁ ଖାଇବୁ ମାଡ଼
ଭାଙ୍ଗିଯିବ ତୋ'ର ପିଠିର ହାଡ଼ ।



ବିଲୁଆ ଧର ପରବା ମୁଣି
କହୁଚ "ଓଧ ରଖ୍ ରଖ୍ ।"
ହନୁଠୁ ଖାଇ ଜବର ମାଡ଼
ପାଟ କାନ୍ଦୁଚ ସକ୍ ସକ୍

ବାଘ ଖାଇ ମାଉଁସ ପେଟେ
ବାନ୍ତି କରୁଚି ଭକ୍ ଭକ୍ ।
ବୁଢ଼ା ଭାଲୁଟି ବାବାଜି ହୋଇ
ମାଳି ଗଡାଉଚି ଠକ୍ ଠକ୍ ।
ହାତୀର ନାତି ତାଟିଆ ଧରି କ୍ଷୀର ପିଉଚି ଚକ୍ ଚକ୍
ଆଉଁସୁଚି ତା' ପିଠିକୁ ଗଧ, ଜନ୍ତୁ ଗୁହିଁଚି ବକ୍ ବକ୍ ।



ଅଜାଙ୍କର ମୁଁ ନାତି
'ଭାଲୁଆ' ମୋର ସାଥି
ସଙ୍ଗାତ ଶାରୀ-ଶୁଆ
ମଇନା ଗାଈ କୁଆ
ଭଲ ପାଏ ମୁଁ ବଗ, ବଗୁଲି, ବଣି, ଠେକୁଆ, କୁଆ ।



କୁଆଡ଼େ ଯାଉଚୁ ବିଲେଇ ନାନି ?
ଉଡ଼ି ଯାଉଚି ତୋ ପଣତ କାନି ।
ମୂଷାମାନେ ଦେଖି ମାରନ୍ତି ତାଳି
କହନ୍ତି "ତୁ ଭାରି ସୁନ୍ଦରୀ କାଳି ।"
ତୋ ଫଟ ଉଠାନ୍ତି କ୍ୟାମେରା ଧରି
ନ ଯାଆନ୍ତି ତତେ ଟିକିଏ ଡରି ।



ଉଡୁଲୁ, ପୁଡୁଲୁ, ଲଟେଇ
ଚୋ ଚା ବାଣ ଫୁଟେଇ ।
ଢୋଲ, ପେଁକାଳି ବଜେଇ
ଫୁଲରେ ମଟର ସଜେଇ ।
ଆସୁଚି ବାଲୁଆ ବର
ହଳଦୀ ଲଗେଇ-ସିନ୍ଦୂର ପିନ୍ଧେଇ
କନିଆଁକୁ ସଜକର ।
ସରଲେ କୁଣିଆ ଚରଣ୍ଟ
କନିଆଁକୁ ନେଇ ବର ଲେଉଟିବ
ଗାଡ଼ି ହୋଇଗଲେ ଫରଣ୍ଟ ।



ଉକୁଲୁ, ମୁକୁଲୁ, ସୁକୁଲୁ, ପୁଟି
"ନେଉଳ ଦଉଚ ଧାନକୁ କୁଟି ।
ଗୁଉଳ ପାଚୁଡ଼େ ବଲେଇ ନାମ୍ବି
ବାଲ୍‌ଟିରେ ଭାଲୁ, ବୁହାଏ ପାଣି ।
'ଚଢ଼ିଆ' ପାରେ ଚଢ଼ି
କାଉ ଆଣୁଚ ଶୁଖିଲା ଜାଳ ଗଛରୁ ଗଛ ବୁଲି ।
ଭାତ ହବ ଡ଼ାଲି ହବ ହବ ତରକାରୀ
ଯେତେକ ପଶୁ ଯେତେକ ପକ୍ଷୀ
ଖାଇବେ ମନ ଭରି ।
ଖାଇବା ପରେ ନାଚ, ଗୀତର ଲାଗିବ ଧୂମ୍ ଧାମ୍
ଦେଖିବ ଯିଏ ଟିକେଟ କର
ଦଶଟି ଟଙ୍କା ଦାମ୍ ।"



କଙ୍କରେ କଙ୍କ ବୋବେଇ ଦେଏ
ଗ୍ୱେର ମାନଙ୍କୁ ଗ୍ୱେବେଇ ଦେଏ ।
ମାଉଁସ ଭାତ ଯେତେ ଭୁ ଖାଆ
ଘରକୁ ଗ୍ରୁଡ଼ କାହିଁ ନ ଯାଆ ।
ରହିବା ପାଇଁ ଦେବ ମୁଁ ଘର
ଶୋଇବା ପାଇଁ ପଲଙ୍କ ସାର ।
ପିନ୍ଧିବୁ ଯୋଡା, ଗରମ ଜାମା
ଥରିବୁ ନାହିଁ ଶୀତରେ ଜମା ।
ବରଷା ଦିନେ ତୋହର ପାଇଁ
କିଣି ଦେବ ମୁଁ ଛତା ।
ଖରା ଦିନରେ ସର୍‌ବତ ପିଇ
ଥଣ୍ଡା ରଖିବୁ ମଥା ।



ଅଜାଟିକୁ ଅଈଟିଏ
ନାତଟିକୁ ନାତୁଣୀଟିଏ ।
ନାତି ନାଆଁ 'ଭୋଳା'
ନାତୁଣୀ-ଝୁଲେ ଦୋଳା ।

ଖେଳାର କାନ କଟା
ଖେଳୁ ଖେଳୁ ହଜେଇ ଦେଲା
ଅଜାଙ୍କ ପାନ ବଟା ।
ନାତୁଣି ନାଁ ଫୁଲେଇ ।
ଆଇ ତା'କୁ କାଖ କରି
ଗାଁକୁ ନଏ ବୁଲେଇ ।



ଗଧ ହୋଇଚ ଡାକ୍ତର ବାବୁ
ଡାକୁଚ ଆସ ଆସ
କଏ ଭୋଗୁଚ, ଅଣ୍ଡା-ଶରଦ
କଏ ଭୋଗୁଚ କାଶ ।
କାହାକୁ ଝାଡ଼ା, କାହାକୁ ଜର
ଔଷଧ ଦେବ ଥରକୁ ଥର
ଇଞ୍ଜେକ୍‌ସନକୁ ଜମା ନ ଡର ।
ଶୁଖିଲା ତୁମ ମୁହଁରେ ମୁଁ ହିଁ
ଖେଳାଇ ଦେବ ହସ ।



ଦାଆ କାଟିଯାଏ ଧାନ ।
ପୁଅ ଗୁଲୁଥିଲେ ପାଦତଳେ ତାର
ଫୁଟୁଥାଏ ଫୁଲ ମାଳ ।
ବହିଲା ଶୀତଳ ବାଆ ।
ଖନ ଖନ କରି କହୁଦବ ପୁଅ
କଅଣ ତାହାର ନାଆଁ ।
ପୋଖରୀରେ ଫୁଟେ କଇଁ
ଜମାରୁ ତାହାକୁ ଛନୋଟି ବରଷ
ପଡ଼ିଲଣି ସିଏ ବହି ।
ମାଘ ମାସେ ଖରା ଶୀତ ।
ଜେଜେ ମା'କୋଳେ ଗାଇଲଣି ବସି
ମଜା, ମଉଜିଆ ଗୀତ ।



ବାଇ ଚଢ଼େଇ ରେ ବାଇ ଚଢ଼େଇ ।
ଯା' ଉଡ଼ି ଯା' ଡେଣା ବାଡ଼େଇ
ମାଡ଼ି ଆସିଲାଣି ବରଷା ବାଆ ।
ଚାହିଁ ରହିଥିବ ତତେ ତୋ ମାଆ ।
ତତେ ଦେଖି ସିଏ ଦବରେ ହସି ।
କାଖ କରିନେବ ପିଠି ଆଉଁସି ।
କୋଳରେ ବସେଇ କରିବ ଗେଲ ।
ଲଗେଇ ଦବ ସେ ହଳଦୀ ତେଲ ।
ଖିରି କରିଥିବ ଖୁଆଇ ଦବ ।
ବହଳ ଶେଯରେ ଶୁଆଇ ଦବ ।
ହାଇ ମାରି ଢୁଳି ପଡ଼ିଲେ ଶୋଇ ।
ସିଏ ଭୁଲିଯିବ ବାସନ ଧୋଇ ।



ଘର ଧୋଇ ଧାଇ କରିବ ସଫା
ବାରିରୁ ତୋଳିବ ଦେଉଳି କପା ।
ଦେଉଳି କପାରେ ବଳଣା କରି
ସୂତା କାଟିଦବ ଅରଟ ଧରି
ସୂତାରେ ତୋ ପାଇଁ ଲୁଗା ବୁଣିବ
ଜନମ ଦିନରେ ପିନ୍ଧାଇ ଦବ ।



କୋଇଲି ଆଉ କାଉ
ଖାଉ ଖାଉ ଖାଇ ଦେଲେ ସେ
ହଣ୍ଡାଏ ଖୁଦ ଜାଉ ।
ହଜମ କରି ପାରିଲେ ନାହିଁ
'କାଉକୁ' ହେଲା ଜର ।
"କୋଇଲି' ଯାଇ ଡାକି ଆଣିଲା
'ଡାହୁକ' ଡାକ୍ତର ।
ପଥ୍ୟ ଔଷଧ ବଇଦ କଲା
ଡାକ୍ତର ଦେଖି ନାଡ଼ି ।
ପଇସା ନେଲା, ଘରକୁ ଗଲା
ଚଳାଇ ତା'ର ଗାଡ଼ି ।



ଗୋବର ଗ୍ୟାସ ଚୂଲି ।
କି ରାତ୍ରି ଦିନ ଲଗେଇ ଦିଅ
ଧୂଆଁର ଦାଉ ଭୂଲି ।
ଗୋବର ଗ୍ୟାସ ବତି
ଜଳିଲେ ଘର ଦିନଟି ପରି
ଉଜ୍ଜ୍ୱଳ ହେବ ଅତି ।



ଘରଟି ଆମର ସଫା ସୁତୁରା
ଆମେ ସବୁ କେହି ନୋହୁଁ କତରା ।
ଆମ ଲୁଗା, ଜାମା, ମଇଳା ନୁହେଁ
ହସ ହସ ସଦା ଆମର ମୁହେଁ ।
ଆମ ଘର, ଆମ ବଗିଚାବାଡ଼ି
ମନ ହୁଏ ନାହିଁ ଯିବାକୁ ଛାଡ଼ି ।



ଘିରି ଘିରି ଘିରି ବୁଲୁଛି ବିଜୁଳି ପଙ୍ଖା
କି ଦିନ କି ରାତି ଗରମକୁ ନାହିଁ ଦକା ।
ଟକ୍ ଟାକ୍ କରି ସୁଇଚ୍‌କୁ ଟିପି ଦିଅ;
ଯେତେ ପାରି ସେତେ ବିଜୁଳି ଆଲୁଅ ନିଅ ।
ବିଜୁଳି ଚୁଲି କି ବିଜୁଳି ପେଷଣା-ଯନ୍ତ୍ର
ତା'ଠାରୁ ବଳି ସୁବିଧା କେଉଁଠି ନାହିଁ ।



ଦରିଆ ସେପାଟରେ ରହିଛି ଦେଶ ।
ସେ ଦେଶକୁ ଆମେ ଯିବାରେ ଆସ ।
ସେ ଦେଶ ପିଲାଙ୍କ ସାଥି ହୋଇବା ।
ପଢ଼ିବା, ଖେଳିବା, ଗୀତ ଗାଇବା ।
ଆସିବା ତାହାଙ୍କୁ ସାଥିରେ ନେଇ ।
ଆମ ଦେଶ ବୁଲି ଦେଖିବେ ସେଇ ।



ତୁଳି ଆଣିଦିଅ ରଙ୍ଗ ଆଣି ଦିଅ
ତୁଳି, ରଙ୍ଗରେ କାଗଜ ପରେ
ଛବି ଆଙ୍କିବ ପୁଅ ।

ଆଙ୍କିବ ଗଛ, ପତ୍ର, ଡାଳ
ପାହାଡ, ନଈ, ପୋଖରୀ, ନାଳ ।
ଫୁଲ ଫଳ, ଘର, ବଗିଚ୍ଚ ।
ଆଉ ଯାହା ସେ କରିବ ଇଚ୍ଛା ।



ଯୁଇ, ଯାଇ, ମଲ୍ଲୀଧଳା-ଧଳା ପୁଣି ଟଗର ।
ଧଳା ହେନା, ମାଳତୀ, ଗଇଣ, ଧଳାମନ୍ଦାର ।
କାଶତଣ୍ଡି ଫୁଲଧଳା, ଧଳା ଗଙ୍ଗ ଶିଉଳି ।
ବଗଧଳା, ଧଳାଚନ୍ଦ୍ର କାନ୍ତି ଦିଏ ଧଉଳି ।



ନାଲି କଇଁ ପୁଣି ନାଲି ମନ୍ଦାର
ଦେବୀଙ୍କ ମଥାରେ ନାଲି ସିନ୍ଦୁର ।
କୁକୁଡ଼ା ମୁଣ୍ଡର ମକୁଟ ନାଲି ।
ନାଲିଆ ରକତ, ନାଲିଆ କାଳି ।



ବେଳ ବୁଡ଼ିଲେ, ଚଉରା ମୂଳେ
ଦୀପଟି ମାଆ ଦିଅନ୍ତି ଜାଳି
ଆମର କୁନା ଓଳଗି ହୁଏ
ଦିଅଁଙ୍କ ପାଖେ ଜଣାଣ ବୋଲି ।
ଆଲୁଅ ଜାଳି, ସପଟି ପାରି
ସିଲଟ ଧରି ବସଇ ପଢ଼ି ।
ପଢ଼ା ସରିଲେ ଖାଇସାରିଲେ
ଶେଯ ଉପରେ ପଡଇ ଗଡ଼ି ।
ଉଠଇ ଯାଇ ପାହିଲେ ରାତି
ଘଷିଲେ କାଢ଼ି କଜଳ ପାତି ।
ଗଛ ଛୁଇଁଲେ ନାଲିଆ ଖରା
ବଗିଚ୍ଚ ହେଲେ ଫୁଲରେ ଭରା ।



କାନ୍ଦ ନାହିଁ ଧନ ଆଖିକ ମଳି
ହାତରୁ ଆଖିରେ ଲାଗିବ ଧୂଳି ।

କଇଁ କଇଁ ହୋଇ କାନ୍ଦିବୁ ଯେବେ ।
ଦାନ୍ତଟିରୁ ବଳ ଛୁଟିବ ତେବେ ।
ତଳେ ଗଡ଼ିକରି କାନ୍ଦିଲେ ଝିଅ ।
ଧୂଳି ଧୂସରିଆ ଦିଶିବ ଦାନ୍ତ



ଘର ଚଟିଆ ତୁ ଆ’ରେ ।
କୁନିକୁ ହସେଇ ଯା’ରେ ।
ନାକ ସକେଇ ମୋ କୁନିଟି
ହେଉ ନାହିଁ ଜମା ତୁନିଟି ।
କୁନିକୁ ଦେଲେ ତୁ ହସେଇ ।
(ତତେ) ଦୋଳିରେ ଦେବି ମୁଁ ବସେଇ ।



ତାଳି ତାଳିରେ ତାଳି ତାଳି ।
ତୁନି ହେଇଯାଆ ତାଳି ମାରି ।
ପୋଛୁ ଦେଉଛି ମୁଁ ଲୁହ ତୋ’ର ।
ଶୋଇପଡ଼ ଧନ କୋଳେ ମୋର ।
ଉଠିଲେ ଖାଇବୁ ପିଠା, ଖିରି ।
କେନ୍ଦ୍ରାପଡ଼ାର ରସାବଳୀ ।



ତୁନି ହୋଇଯାଆ କୁନିଲୋ ମୋର ।
ରାତି ଆସିକରି ହେଲାଣି ‘ବାର’ ।
ବାପା, ଭାଇ, ଅପା ଗଲେଣି ଶୋଇ ।
ତୋ କାନ୍ଦରେ ସିଏ ଉଠିବେ ଚେଇଁ ।
ଜହ୍ନ ଉଠି ତତେ ଦେବେଟି ଗାଳି ।
ଶୋଇପଡ଼ ମୋର ସୁନାର ମାଳି ।
କାଲି ତ ସେମାନେ ଯାତରା ଯିବେ ।
ନକାନ୍ଦିଲେ ତତେ ସାଥିରେ ନେବେ ।



ଗୁଣ୍ଡେଟି ଦଗର ଗୁଣ୍ଡେଟି ନାଆଁ ।
ପୂରୁବ ଦିଗରେ ଆମରି ଗାଁଆ ।

ପଶ୍ଚିମ ଦିଗରେ ମାମୁଁଙ୍କ ଘର ।
ଉତ୍ତର ଦିଗରେ ଗମ୍ଭୀର ବିଲ ।
ଦକ୍ଷିଣ ଦିଗରେ ଜଙ୍ଗଲ ବଣ ।
ବାଘ, ଭାଲୁ, ସେଠି ପଣକୁ ପଣ ।
ଠେକୁଆ, ହରିଣ, ମିରିଗ, ହାତୀ ।
ବଳିଆ କୁକୁର, ବିଲୁଆ, ପାଠି ।
ସାଥି, ମେଳ ହୋଇ ରହନ୍ତି ତହିଁ ।
କଳି ଗୋଳ କେବେ କରନ୍ତି ନାହିଁ ।



ଝିଙ୍କି ଚକି ଗୁଡ଼ି କାନରେ କୁଣ୍ଠା ।
ଅଳପ ବେଳରେ ଗୁହାଳ ଝଣ୍ଟା ।
ଗୋଡ଼, ଅବା ହାତ ଲାଗଇ ନାହିଁ ।
ଅଣ୍ଟା, ପିଠି ଯୋଳି ହୁଅଇ ନାହିଁ ।
ଗୁବି ମୋଡ଼ି ଦେଲେ ଗୁଳଭ କାଳି ।
କାଳତ ଆମର ଅସଲ ବଳି ।



ଜାଗୁ କହୁଛୁ ମୁଁ 'ପୁଲିସି'
'ପୁଣ୍ଟି' ରୁ ବୋଟେ ଟେରୁ
ଏଇ ବାଡ଼ିରେ ମଜାଟା ଆଜି
ନିକାଳି ଦେବି ତୋର ।
ମୋ ପାଇଁ ଥିଲା ଖାକୁର ଝୋଳ
ଲୁଚେଇ ଦେଲୁ ଖାଇ ।
ପୋଲିସି ବାବୁ ହୋଇଚି ତେଣୁ
ତୋତେ ଧରିବା ପାଇଁ ।



ସକାଳରୁ ଲୁନା ଦଉଡ଼ୁଚି ବୋଲି
ଦେହୁ ତା ରହୁଚି ଭଲ ।
ଜେନେ କହୁଚନ୍ତି ସକାଳେ ଶୋଇବା
ହୁଟାଏ ଦହୁର ବଳ ।

ଗାଧୋଇବା ଆଗୁ ମାଆ ଦେଉଛନ୍ତି
ଦେହରୁ ସାରା ତେଲ ଘର୍ଷି ।
'ମୋ କୁନା ହେବନି ଡାକ୍ତର ସାଙ୍ଗେ
ଗେଲ' କହୁଛନ୍ତି ହସି ।
ଜେଜେମା କହନ୍ତି 'ମଇଳା ପଶୁଚି
କୁନା ନଖ କାଟିଦିଅ ।
ନଖ ମଳ ଗୁଡ଼ା ପେଟକୁ ଗଲେଟି
ବଢ଼ିଯିବ ତା ପିଳ୍ହ ।
ଅପାର ଲାଗିବା 'ସାଗୁନ ଲଗା ମା
ପିଳ୍ହ ତା ରହିବ ଘଫା ।
କାଛୁ, କୁଣ୍ଡିଆରେ ନହେଲେ 'କୁନା'ର
ଦଫା ହୋଇଯିବ ରଫା ।



ହାତଟିକୁ ମୋ'ର ସାଥିରେ ନେବ
ଆକାଶ ବୁଲାଇ ଦେଖେଇ ଦେବ ।
ଉଡ଼ା ଜାହାଜରେ ବସି ।
ସାଥିରେ ବି ମୋର ନେଇଥିବ ପୁଣି
ନେଉଳ, କୁକୁର, ପୁଷି ।
ବାଟରେ ଭେଟିଲେ ରକେଟ୍‌ଟିଏ
ଉଡ଼ାଜାହାଜକୁ ଛାଡ଼ି ।
ବସିବୁ ତହିଁରେ ସଭିଏ ଆମେ
ଚନ୍ଦ୍ର ଦେଶେ ଯିବୁ ଉଡ଼ି ।



ଆ'ରେ ଶୁଆ ଆ
ଆମ ପୁଅକୁ ସାଥିରେ ତୋର
ଉଡ଼େଇ ନେଇ ଯା ।
ପୁଅ ମୋର ଗହନ ବଣ ଦେଖିବ
ପାଚିଲା ପାଚିଲା ଫଳ ଖାଇବ ।
ଝରଣା ପାଣିରୁ ପେଟେ ପିଇବ
ରାତି ହେଲେ ତୋ'ର ପାଖେ ଶୋଇବ ।
ମନେ କରି ତା'କୁ ଦବୁ ଶିଖାଇ
ବାଘ, ଭାଲୁ ଦେଖି ଡରିବ ନାହିଁ ।

କହିଦେବୁ ତା'କୁ 'ସ୍କୁଲରେ ଚଳେ
କଣ୍ଟା ପଶିବ ତା କୁନି ପାଦରେ ।
ପଥର ପଡ଼ିଛି ଠାଆକୁ ଠାଆ
ଝୁଣ୍ଟି ପଡ଼ି ଗୋଡ଼ ଫୋଇବ ଘାଆ ।
ବଣ ବୁଲି ଯାଇ ଆସିଲେ ସ୍କୁଲ
ଇସ୍କୁଲକୁ ସେ ଯିବନି ସ୍କୁଲ ।'



ଖଣ୍ଡ, ଖଉ, ଖଉ ନଗର ତୁ କାଉ
କୋଣାରକେ ଉଡ଼ି ଯାଆ
ଚନ୍ଦର ଭାଗାରେ ବୁଡ଼ ଦେଇ ଯାଇ
ଭୁବନେଶ୍ୱରକୁ ଆ
ଭୁବନେଶ୍ୱରରେ ଲିଙ୍ଗରାଜ ପୁଜି
ପୁଣି ସହରକୁ ଯିବୁ ।
ବଡ଼ ଦେଉଳରେ ବାଇଶି ପାହାଚ
ଗୋଟି ଗୋଟି ଚଢ଼ୁଥିବୁ ।
ବାବା ବିଶ୍ୱନାଥ, ଗଣେଶ ଦେଖିବୁ
ଦେଖିବୁ ମାଆ 'ବିମଳା'
ରତ୍ନ ସିଂହାସନେ ବିଜେ କରିଛନ୍ତି
ପ୍ରଭୁ ଜଗନ୍ନାଥ ପସ୍ତ ।
ପାଖରେ ଗେହ୍ଲେଇ ଭଉଣୀ ସୁଭଦ୍ରା
ବଳରାମ ବଡ଼ଭାଇ ।
ଆନନ୍ଦ ବଜାରେ 'ଅବଢ଼ା' ଖାଇ ତୁ
ଆଣିବୁ ମୋ ପୁଅ ପାଇଁ ।



ପରବତ 'କପିଳାସ'
ସେଇ ପରବତେ ଉପର ମୁଣ୍ଡରେ
"ହର, ଗଉରୀ"ଙ୍କ ବାସ ।
ପଥର ଖୋଲରୁ ଝର ଝର ଝର
ଝରଣା ପଡ଼ୁଛି ଝରି ।
ମୋ କୁନି ପୁଅର ଗୋଡ଼ ଥକିଯିବ
ପାହାଚରେ ଚଢ଼ି ଚଢ଼ି ।



କଟକେ କଟକ କାଳୀ

କାଳୀ ଗଳରେ ମୋ ପୁଅ ଯାଉଅଛୁ
ହାତେ ତା'ର ଷେଗ୍‌ଥାଳ ।
ସମ୍ବଲପୁରରେ ମାଆ ସମଲଇ
ସିଏ ତ ସବୁର ମାଆ ।
ବିପଦେ ଆପଦେ ସୁମରଣା କଲେ
ସବୁର ହୁଅନ୍ତ ସାହା ।
ଗଙ୍ଗା ପାର ହେଲେ ଦକ୍ଷିଣ କାଳୀ
'ମଶାଣି କାଳୀ' ଟି କଟକେ ।
କାଠଯୋଡ଼ି ବନ୍ଧେ ଗ୍ଲଲ ଯାଉଥିଲେ
ଆଖି ତାଙ୍କ ପାଖେ ଅଟକେ ।



ମଗୁଣୀର ମାସ ଆସିଲା

ଲକ୍ଷ୍ମୀ ଠାକୁରାଣୀ ପାଦ, ପଦ୍ମ ଚିତା
ଘର, ଦ୍ୱାର ସାରା ହସିଲା ।
ଆରିଷା, କାକରା, ଗଜା-ମାଳ ପୁଆ
ପୂଜା ପାଇଁ ମାଆ ଗ୍ରୁଣିଲେ ।
ଚୁଲି ପାଖେ ବସି ବୁଢ଼ା ବୁଢ଼ୀମାନେ
ଶୀତରେ ଉଷୁମ ଟାଣିଲେ ।
ଧାନକଟା ଗୀତ କ୍ଷେତରେ ଶୁଭିଲା
ହଳା ଜମା ହେଲା ଖଳାରେ ।
ଶୀତ କାକରକୁ ପିଠିରେ ବସାଇ
ମଗୁଣୀର ଆସି ଗଲାରେ ।



ଷୋଦୁଅ ମାସର ରବିବାର ।
ଫୁଲ ତୋଳା ହବ ହେଲେ ଷୋର୍ ।
ଖୁଦୁକୁଣୀ କୁନି କରିବ ପୂଜା ।
ଷେଗ ଦବ ଚୁଡ଼ା, ଉଖୁଡ଼ା ଗଜା ।
କଦଳୀ, କାକୁଡ଼ି, ଲଡ଼ୁ, ନଡ଼ିଆ ।
କୁନା କୁନି ଖାଇ ମାରିବେ ଡିଆଁ ।



ଝୁମୁ-ଝୁମୁ ଝୁମୁ ମେଘ ଟୋପାଆଣି
ଆସିଛୁ ଆଷାଢ଼ ମାସ ।
ଫୁଟିଲାଣି-ଜୁଇ, ଟଗର, ମାଲତୀ
କଅଁଳ ଗଜାଣି ଘାସ ।
ମାରିଲାଣି ଘଡ଼ଘଡ଼ ବିଜୁଳି
ପାଚି ଝୁଲିଲାଣି ଜାମୁ, ପିଜୁଳି ।
ପାଣି ହୋଇଲାଣି ରଜ ।
କୁନା କୁନି ମୋର ଦୋଳରେ ଝୁଲିବେ
ହୋଇ ନୂଆ ନୂଆ ସଜ ।



କାର୍ତ୍ତିକ ମାସେ "ଦୀପାବଳୀ"
ପୂଜା ପାଇବେଟି "ମାଆ କାଳୀ ।
କୁନା କୁନି ଦେବେ ଦୀପ ଜାଳି
ମାରିବେ ସେ ବାଣ, ଫୁଲ ଝରି ।
ଛାଡ଼ି ବାଣ ଆଉ ହଉଇଲ ।
ହସି ଦେଉଥିବେ ଖିଲ୍ ଖିଲ୍ ।
ଫଟକା ମାରିବେ ଠୋ, ଠା
ବମ୍ ଫୁଟେଇବେ ଢୋ, ଢା ।
ହାଉଇ, ରକେଟ୍ ଦେବେ ଛାଡ଼ି
ଉପରକୁ ସିଏ ଯିବ ଉଡ଼ି ।
ଆମ କୁନାକୁନି ଦୀପ ଜାଳି
ଉଆଁସ ଅନ୍ଧାର ଦେବେ ଛଡ଼ି ।



ଆସିଗଲା ଦଶହରା,
ଘରଆଡ଼େ ମେଳାଇଲା
ହସ ଖୁସି ପସରା,
ନାହିଁ ଆଉ ବରଷା
ଘରଆଡ଼ ସରସା,
ଦେବୀ ପୂଜା ହେବଟି
ପିଠା, ମିଠା, ଫଳ ଫୁଲ
ଦୁଃଖ ନେବଟି ।



'ମାଘ ମାସ' ଆସିଗଲାରେ ।
ହାଡ଼ଭଙ୍ଗା ଜାଡ଼ ବାଘପରି ଆସି
କଲିଜା ଥରେଇ ଦେଲାରେ ।
ସୂରୁଯ ବୁଡ଼ିଲା, ସଞ୍ଜ ଆସିଗଲା,
ଅଜା ଡାକ ଦେଲେ ଆଈଙ୍କି ।
ନିଆଁ ଉହ୍ନେଇଟା,
ବେଗେ ନେଇ ଆସ,
ଡେରି କର ଆଉ କାହିଁକି ? ।



'ଚଇତ ପୂନିଏ' ଚଇତ ଘୋଡ଼ା ଲୋ
ନାଚି ବୁଲେ ଗାଆଁ ଗାଆଁ ।
ଘୋଡ଼ା ମୁଣ୍ଡେ ବୋଲା ଗୋଲା ସିନ୍ଦୁରଟି
ଦେଖିବ ସଭିଏ ଯାଆ ।
ଝୁଲି ଝୁଲି ଯେବେ ନାଚୁଥାଇ ଘୋଡା
ନାଚେ ତା ମନ୍ଦାର ମାଳ
ନାଚଇ ରାଉତ, ନାଚେ ରାଉତାଣୀ
ବନ୍ଧୁ ପଡ଼େ ଦେଇ ଝାଳ ।
ଗାଆଁକୁ ଗାଆଁକୁ ଘୋଡ଼ା ନାଚ ବାଜା
ପବନେ ପହଁରି ଯାଏ ।
ଚଢ଼େଇଟା ଗୀତକୁ ଆମ ପୁଅ ବସି
ରାତି ସାରା ଶୁଣୁଥାଏ ।



ମାଘ ପୁନିଅଁରେ ଅଗି ଜଳିବ ।
ଅଗିଜଳା ଦେଖି ଶୀତ ଟଳିବ ।
ଆସିବ ଫଗୁଣ ମାସ
ତୋଟା ପାଖବାଟ ମହକେଇ ଦବ
ଆମ୍ବ ବଉଳର ବାସ ।
ଫୁଟିବ ଚଣା, ଧରିବ କସି
ପଖାଳ ଭାତରେ ଖାଇବା ବସି ।



କୁଆଁର ପୂନେଇ ଜହ୍ନ
ନାଉଫୁଲ ପରି ଦାଉ ଦାଉ ହସେ
ଯେଇ ଜହ୍ନଠାରେ ମନ ।
ମୋ କୁନି ଖେଳିବ ପୁଚି ।
ଆଉ ଯେତେ ଝିଅ ହଟି ଯାଇ ସବୁ
ପଛକୁ ଆସିବେ ଘୁଞ୍ଚି ।

□

ଘୁଞ୍ଚି ଘୁଞ୍ଚି ଯାଏ ଗୁହଇ
ଆମ ଝିଅ ଯେବେ ଅଷ୍ଟ ହୋଇବ
କାଖ କରି ନେବେ ଭାଇ ।
ଭାଇଙ୍କ ହାତରେ ବନ୍ଧୁ ।
କୁନି ଯାଇଥିଲା ମାମୁଁଙ୍କ ଘରକୁ
ପାଣି ହୋଇ ଥିଲା ନଈ ।

□

ମାଗୁଣୀର ମାସ ଶେଷ ହୋଇଗଲା
କ୍ଷେତେ ଧାନ ଗଲା ପାଚି ।
ଦାଆ ହାତେ ଧରି ଚାଷି ଭାଇ ମନ
ଖୁସିରେ ଉଠିଲା ନାଚି ।
ଭୁଲିଲା ଶୀତ, ଗାଇଲା ଗୀତ
ସବୁଟି ଯେମିତି ପାଇଲା
ଦାଆ ଧରି ହାତେ, ସାଙ୍ଗଭାଇ ସାଥେ
ଧାନ କାଟିବାକୁ ଧାଇଁଲା ।

□

ମଗୁଶୀର ମାସ ଦୂବଘାସ ଶେଯେ
କାକର ପଡ଼ିଛି ଶୋଇ
କୁନ୍‌ମୁନ୍ ମୋର, ଶୀତେ ଥର ଥର ।
ଜେଜେମା କୋଳରେ ଥାଇ ।
ଶୀତରେ ଶୀତ ! ଗାଇଲେ ଗୀତ,
ପଳେଇବୁ ଗୁଡ଼ ଖାଇକ ।
କୁନିର ପାଦରେ ଅଳତା ପଟି
ମୀନା କାମ କରା ପାଉଁଜ ।

□

ଆ’ରେ ମେଘ ଆ,
ବରଷି ଦେଇ ଯାଆ ।
ଦାଣ୍ଡରେ ଖେଳୁ ପୁଅ
କୁନା ମୋ ସୁନା ପୁଅ
କାଗଜ ଡଙ୍ଗା କରି
ଭସାଇ ଦେଉ ଧରି ।
ଯାଆରେ ଡଙ୍ଗା ଯାଆ,
ସହଳ ଫେରି ଆ,
ସେ ଗାଆଁ କଥା କହ ।
କୁନା ପାଖରେ ରହ ।
ଆମ କୁନାଟି ସୁନା,
ତାହାର ସାଥି ମୁନା
ଦୁ’ଜଣ ଭଲ ଛାତ୍ର—
ପଢ଼ନ୍ତି ଭଲ ପାଠ ।



ଆକାଶ ରାଇଜ ରାଜା ରେ
ଆସୁଛ ବଜାଇ ବାଜା ରେ ।
ବଉଦ ଘୋଡ଼ାରେ ଚଢ଼ିଛ
ଘଡ଼ଘଡ଼ି ବାଣ ମାରୁଛ ।
ବରଷା ଦେଉଛ ଝରେଇ ।
ଦହକୁ ଦଉଛ ଥରାଇ ।
ବିଜୁଳି ଦୀପାଳି ଜାଳୁଛ ।
ବନ-ଗଛ ପାଣି ଢାଳୁଛ ।



ବରଷା ତୁ ଆ ଆ ରେ
ଗୀତଟିଏ ଗାଆ ରେ ।
ଟୁପୁ ଟୁପୁ ଟୁପୁ ଟୁପୁ ବରଷି ଯା ପାଣି
ବରବେଶେ ବେଙ୍ଗ ଯାଉ ବେଙ୍ଗୁଲୀକୁ ଆଣି ।
ଘଡ଼, ଘଡ଼, ଘଡ଼, ଘଡ଼ ଘଡ଼ଘଡ଼ି ବଜାରେ ।

ବଜା, ବଜା, ବଜା ରେ ।
ବଜା, ବଜା, ବଜା ରେ ।
ଚକ୍ ଚକ୍ ଚକ୍ ଚକ୍
ମାରି ଦେଏ ବିଜୁଳି ।
ଘଡେଇଦେ, ଘଡେଇଦେ
ଜାମୁକୋଳି, ପିଜୁଳି ।



ମେଘ ବରଷଇ ଝୁପୁରୁ ଝୁପୁରୁ
ବେଙ୍ଗ ଡ଼ିଏଁ ଫକ ଫକ ।
ଆମ ଘୁଅ ମୁଣ୍ଡେ ଜର ଝୋପିଟିଏ
ଦିଶୁଥାଏ ଜକ ଜକ ।
ମେଘ ବରଷଇ-ଝଡ଼ିଆ ପାଗରେ
ଝଡ଼ି ପୋକ ଉଡ଼ି ବୁଲେ ।
ଆମରି ଝିଅଟି ସୁନା ଫୁଲ ଟିଏ
ଦୋଳି ଗୀତ ଗାଇ ଝୁଲେ ।



ବଇଶାଖ ମାସ ଖର ଝାଣ ଖର
ଝାଳ ବହେ ଗମ ଗମ ।
କୁନି ହସି ଦେଲେ ଗୁନ୍ଦ ମୁହଁ ତା’ର
ଦଶେ ନାଲି ଥମ ଥମ ।
ନାଲି ପଥର ମୁଦ ।
କୁନି ପିନ୍ଧିଥିଲା ବାଜେଣୀ ପାଉଁଜ
ଗୁଲୁଥିଲା କୁଦ କୁଦ ।



ଝର ଝର ଝର ଝରେ ବରଷା
ଆମ ବଗିଚାଟି ଦିଶେ ସରସା ।
ଫୁଟି ମହକୁଚ ହେନା ଟଗର
ଗୋଲାପ, ମାଳତୀ-ଯୁଇ, ମନ୍ଦାର ।
ଆଖି ଝଲସାଇ ମାରେ ବିଜୁଳି ।
ପାଚି ଝଡ଼ୁଅଛୁ ଜାଳ, ପିଜୁଳି ।

ଭୂଇଁ ଦୁଲୁକୁଚି ଘଡ଼ ଘଡ଼ରେ ।
ଶୁଣି ଜୁନା ଜୁନ ଉଠି ପଡ଼ଲେ ।



ଶୀତ ଅଇଲା ଶୀତ ଅଇଲା
ବନ୍ଧେ ହେମାଳ ବାଆ ।
ବଲେଇ ନାଗି-ବଲୁଆ ନନା
ପିଅନ୍ତି ବସି ଗୃହ୍ମା ।
କଲ ଝୁଲଣାରେ ଖଲୁଆ ବସି ।
ଘିର ଘିର ବୁଲେ-ମୁର୍କି ହସି ।



'ଫଗୁଣ' ମାସରେ ଦୋଳ,
ଗାଆଁ ଭୋଗ ଖାଇ ଦଅଁ ବାହାରଲେ
ମୁନ୍ନା ବଜେଇବ 'ଖୋଳ' ।
କୁନାର ହାତରେ ଝାଞ୍ଜ ବାଜୁଥିବ
ଝାଇଁ ଜାଇଁ-ସାଇଁ ଝାଇଁ ।
ନାଲି ନାଲି ରଙ୍ଗ ଅବିର ଖେଳରେ
ସାଠ ସିନା ଯିବ ପାଣ୍ଡୁ ।



ଶୀତ ମାଉସୀ ଲୋ ଶୀତ ମାଉସୀ ।
ମୋ କୁନ ପିଠିକୁ ଦେଏ ଆଉଁସି ।
ତୋ ହେମାଳ ହାତ ବାଜିବ ଯେବେ ।
ସୁନା ଝିଅ ମୋର ଶୋଇବ ତେବେ ।
ସାଠ ଆସିକରି ହେଲାଣି ବା'ର ।
ଜଡ ଆସୁ ନାହିଁ ଆଖିକୁ ତା'ର ।
ଅଟ୍ଟ ହୋଇ ସେ କାନ୍ଦୁଚି ଖାଲି ।
ମୁହଁ, ଆଖି ପଡ଼ିଗଲାଣି ନାଲି ।
ବେଗେ ତୁ ଆ ଆ ଲୋ ଶୀତ ମାଉସୀ ।
ଝିଅର ପିଠିକୁ ଦେଏ ଆଉଁସି ।



ଶୀତ ଅଇଲାରେ ଅଇଲା
ହେମାଳ ପବନ ବହିଲା ।
କାକର ସାଥିରେ ଆସିଲା ଶୀତ
ଧାନ କେଲେ ବସି ଗାଇଲା ଗୀତ ।
ସୋରିଷ ଫୁଲର ହଳଦୀ ପାଟ
ତାକୁ ପିନ୍ଧି ଶୀତ କରିଲା ନାଟ ।
ଭୁନା କାନେ ଭୁନ କହିଲା ।
ଆମର ସାଥିରେ ସାକଯୁକ ହୋଇ
ଶେଯ ତଳେ ଶୀତ ଶୋଇଲା ।

□

ମଗୁଶୀର ମାସେ ଦନ୍ତ ସୁହା ଶୀତ
ପୁଷ, ମାଘ ଶୀତ ଖର ।
ପୁଅ ମୋର ଯେବେ କୋଳରୁ ଓହ୍ଲାଏ
ଦାନ୍ତ ତା'ର ଉଠେ ଥର ।
ଓଠେ ଓଠ ଯାଏ ବାଜି ।
ଗେହ୍ଲେଇ କହେ ସେ ବୋଉ ଲୋ
ତୋ କୋଳ ଛାଡ଼ି ପାରିବନି ଆଜି ।

□

ଶ୍ରାବଣ ମାସ ଅଇଲା
"ଝର ଝର ହୋଇ ମେଘ ବରଷିବ"
'ଭୁନା'ଟି ଭୁନକୁ କହିଲା ।
"ପାଚ ମହକିବ ପିଜୁଲି ।
ଆଖି ଝଲସାଇ ଚକ୍ ଚକ୍ ହୋଇ
ମାରିବ ଭୁନଲେ ବିଜୁଳି ।
ଘଡ଼ ଘଡ଼ି ମାରି ଚମକାଇ ଦେବ
ଖେଳିବେ ମାଛର ଜାଆଁଳ ।
କେ କେ ମା କହିବେ "ଶୋଇପଡ଼ ଧନ
ହୋଇଲାଣି ପାଗ କାହାଳ" ।

□

ମଗୁଶୀର ମାସ ଅଇଲା
ପାଚିଲା ଧାନର କେଣ୍ଡାମାନ ଧରି
ଧାନଗଛ ସବୁ ନଇଁଲା ।

ଆ' ଗୁଣ୍ଡୀ ଭାଇ ଦାଆକୁ ଧର
ଧାନ କାଟି ଦେଏ ଡେରି ନକର ।
ଦୁଲା ଜମା କର ଖଳାରେ ।
ନୂଆ ଚାଉଳର ଖିରି ରାନ୍ଧ କର
ପାଟି ଆଡ଼େ ହାତ ଚଳାରେ ।

□

ମେଘ ଘୋଟିଲାଣି କଳା ଘୁମର ।
ବଣ ଗହଳରେ ନାଚେ ମୟୂର ।
ବେଙ୍ଗ ଗୁଡ଼ା ଡେଉଁଚ ଫଳର ଫଳ
ଉଡ଼ି ବୁଲିଲେଣି ଝିଙ୍କିଆ ପୋକ ।
ଦିନ ରାତି ବାରି ହୁଅଇ ନାହିଁ
ଦେଏଖେରେ କୁନା ଆକାଶେ ଚାହିଁ ।
ମେଘ ପାଣି ଯେବେ ପଡ଼ିବ ତଳେ
ବାହାରୁ ଆସି ତୁ ରହିବୁ ଘରେ ।

□

ପୁଷ ମାସ ଶୀତ—କି ଗୀତ ଗାଇଲି
କ୍ଷେତରେ ଫଳିଲା କୋବି ।
ରଙ୍ଗ ଆଉ ତୁଳି ସଜାଡ଼ି ରଖିଥା
ମୋ ପୁଅ ଆଙ୍କିବ ଛବି ।

□

'ଚଇତ' ମାସରେ ଝାମୁ ଯାତରା ଟି
ଗୁଇଁ ଗାଇଁ ମାରେ ଖରା ।
ଧୀର ପବନରେ ଆମ୍ବ ପାଚ ଝଡ଼େ,
ଆଣିବାକୁ ଧରା ପରା ।
ପାଚିଲା ପଣ କୁହାଟ ଗୁଡ଼ୁଛି
"ମତେ ବେଗେ ତୋଳ ହଅ ।
ସପୁରି କହୁଚ ମୁଁ ଭାରି ମିଠା
ମୋତେ କାଟି ଖାଇଦିଅ ।
ଖଜୁରୀ-ଭଉଁଚ-ବେତକୋଳି ସବୁ
ମୁହଁକୁ ଶୁଖେଇ ଦେଇ ।
କଥା ହେଉଚନ୍ତି "ଆମକୁ ତ ଆଉ
କେହି ପଚାରିଲେ ନାହିଁ" ।

"ଜ୍ୟୋଷ୍ଠ ମାସେ ଝାଣ ଖସ୍ତ ।
ପଣା, ପାଣି ପିଇ ଗୁଳଡ଼ଳେ ରହ
ମୋ ସୁନା ପୁଅଟି ପସ୍ତ ।
ଗ୍ରୀଷ୍ମଟା ବାଜଲେ ଯାଇ ଖସ୍ତ ନଇଁଯିବ
ଖେଳବୁ ବୁଲବୁ ମନା ମୁଁ କରିବ ନାହିଁ ।



ଆସିବ ଆସିଚ ବରଷା ମାସ
ବଉଳ ଫୁଲରେ ବୋଳିଚ ବାସ ।
ଝିର ଝିର ଝରୁଅଛୁ ବରଷା
ବଗିଚ୍ଚ ଦିଶୁଚ ବଡ଼ ସରସା ।
ଯାଉଚ୍ଛୁ ପିଜୁଳି, ନାଚୁଚ ବେଙ୍ଗ
ପୋଖରୀ ପାଣିରେ ଖେଳୁଚ ଚେଙ୍ଗ ।
ବଡ଼ିଆ ଦିଶୁଚ ଘାସ ପଡ଼ିଆ
ମୋ କୁନା ଖାଇବ ମୁଢ଼ି, ନଡ଼ିଆ ।



ଶ୍ରାବଣ ମାସ ଆସିଲା
ଘରେ ଘରେ ହେଲା ଚତୋଉ, ଚକୁଳି
ମନ୍ଦ ମନ୍ଦ ହୋଇ ବାସିଲା ।
ମାସ ଶେଷେ ଗହ୍ମା ପୂନେଇ ।
ଝୁଲଣ ବେଦୀରେ ଦିଅଁ ଝୁଲୁଥିଲେ,
'ହୁଟୁ' ରହୁଥିଲା ଅନେଇଁ ।



ଏଇ ମାସ ଗୋଟି 'ଭାଦ୍ରବ'
ନାହିଁ ପଚ ପଚ କାଦୁଅ ।
ବରଷା, ବତାସ, ପବନ
ସତେ ଅବା ଏବେ ସପନ ।
ଖୁଦୁକୁଣୀ ପୂଜା ପାଇଁ
ଗ୍ରାମ ପାହ୍ଲୁ ପାହ୍ଲୁ କୁନ ଝିଅ ମୋର
ଫୁଲ ପାଇଁ ଯିବ ଧାଇଁ ।

"ଗଣେଶ ପୂଜା"ର ଦିନଟି ।
ଗଣେଶ ପୂଜିବ ଆମ କୁନା ବାବୁ
ପାଟରେ ଲଗାଇ ମନଟି ।



କାର୍ତ୍ତିକ ଧର୍ମ ମାସ ।
ବଗ, ବଗୁଲି ଏ ଆମିଷ ଛାଡ଼ିବେ
କରିବେ ସେ ଉପବାସ ।
ଅଜା ଆଈ ଦୁଇଜଣ ।
ପୁଣି 'ଦେଉଳ'ରେ ଦର୍ଶନ କରି ସେ
ଖାଇବେ ଅବଢ଼ା ଅନ୍ନ ।
କାର୍ତ୍ତିକ ପୂନେଇଁ ଦିନ
ଗଡ଼ ଗଡ଼ିଆରେ ବାଲିଯାତ୍ରା ଦେଖି
ଖୁସି ହେବ କୁନା ମନ ।



ପୁଷରେ କାହ୍ନାଳ ହୋଇଲା ।
ନୂଆ ଧାନ ଖଜି ଧନୁ ମୁଆଁ କରି
ଆମ ଜେଜେ ମାଆ ଖୋଇଲା ।
ରାତି ପାହି ହେଲେ ସକାଳ
'ବାବୁନ' କହିଲା ମୁଆଁ ମୋତେ ଦିଅ
ଖାଇବ ନାହିଁ ମୁଁ ପଖାଳ ।



'ମାଘ ମାସଟିରେ 'ମକର' ମେଳା
ବାଘ ପରି ଶୀତ ଡରେଇ ଦେଲା ।
ବେଙ୍ଗଲା ପଇଲା ଝଳାରେ ।
ବରଷ ଗୋଟାକ ଚଳିବା ପାଇଁକି
ଅମାରକୁ ଧାନ ଗଲାରେ ।
ଗରମ ପୋଷାକ ମଢ଼େଇ
ଆମ କୁନା, କୁନି ସଜବାଜ ହେଲେ
ଶୀତକୁ ଦବାକୁ ଡରେଇ ।



ଫଗୁଣ ମାସରେ ଦୋଳ ଦଶମୀରେ
ଦଉଁ ବାହାରିଲେ ବୁଲି ।
ଦେଖରେ ଦେଖରେ ବିମାନରେ ବସି
ଯାଉଛନ୍ତି ଝୁଲି ଝୁଲି ।
ହୋଇଲେ ପୂନେଇଁ ବାସି ।
ରଙ୍ଗ, ଅବିରରେ ହୋଲି ଖେଳା ଖେଳ
ସଭିଏ ହୋଇବେ ଖୁସି ।



ଶୀତ ଟାଣ ହେଲା ଖର ।
"କୁଲ୍ କୁଲ୍" ପାଇଁ ସୁଏଟର୍ ଟିଏ
ମାଆ ତା'ର ଦେଲେ କର ।
ଟୋପିଟିଏ ପୁଣି କଲେ ।
ଗରମ କନାରେ ଜାମା କଲେ ଅପା
ଆଉ ମୋଜା ବୁଣି ଦେଲେ ।
"କୁଲୁ" ସବୁ ପିନ୍ଧିଦେଲା ।
ବଡ଼ ସଖାଙ୍କରୁ ଦେଖୁ ଦେଖୁ ତାଙ୍କୁ
ଶୀତ ଡର ଡର ପଳେଇଲା ।



କଟା କଟି ବେଳ ଅଇଲା
ବିଲକୁ କହିଲା ଧାନ ମନ ଦୁଃଖେ
"ତୋ' ମୋ' ସାଙ୍ଗ ସଇଲା
ମୁଁ କଟା ହୋଇ ଏବେ ଯିବି ।
ଖଣିରେ କି ଘରେ ଯେଉଁଠାରେ ଥାଏ
ମାଆଲୋ ମୋର ।
ତୋତେ ମନେ କରୁଥିବି ।



ଦହି ସରବତ୍ ପଇଡ଼ ପାଣି
ମୋ 'କୁଲୁ କୁଲ୍''ଙ୍କୁ ଖର ଶୋଷ ଏବେ ।
ଖସ୍ୱଦନେ ତା'ଙ୍କୁ ଦଅରେ ଆଣି ।

ପଖାଳରେ ଆମ୍ବ କଷି ।
ମନ୍ଦ ମନ୍ଦ ହୋଇ ବାସି ଉଠୁଥିବ
ମୋ ଧନ ଖାଇବ ବସି ।

ଖସ୍ୱଡନେ ଝାଣ ଝସ୍ୱ ।
ଖସ୍ୱ ଧାସ୍ୱ ବାଜି ମୋ ପୁଅ ଦନ୍ତରୁ ।
ଫିଟିପଡେ ଝାଲ ଝସ୍ୱ ।

ମନ୍ଦକଲ ଆମ୍ବ ପାଚ ।
ଗୃଶଠା ଦେଲକୁ ଲସି ପିଇ ପୁଅ
ଖୁସିରେ ଉଠିବ ନାଚ ।

ପଣସ ପାଚଲ୍ଲ ଗଛେ ।
ମୋ ପୁଅ, ଝିଅଙ୍କ କଥା ଆଗେ ବୁଝ
ଆଉ କାମ ଥାଉ ପଛେ ।



ପୂଜା ପାଇଲେଣି ଦେବୀ ।
ଆସ କୁନା କୁନ୍ନ ସଜ ବାଜ ହୋଇ
ଦେବୀଙ୍କି ଦେଖେଇ ନେବ ।

ଜଳୁଚ ଦୀପ ଲଗିଛୁ ଧୂପ,
ଫୁଲ ହୋଇଚ ସଜା ।
କାଠକ ଜାଠ କେତେ ଯେ ଭୋଗ
ଖାଇବା ପାଇଁ ମଜା ।

ଲୋକ ଗହଳି କାହିଁରେ କଣ
ବାଜୁଛୁ ବାଜା ରଣ ଝଣ ।
ଆସରେ ସଜ ହୋଇ
ଦେବୀ ପୂଜାର ପରବ ଇସ୍ନେ
ରହନା ଜମା ଶୋଇ ।



ବୁଢ଼ିଗଲ୍ଲ କୁଆଁ ତାସ୍ୱ ଫୁଲ ସବୁ ଫୁଟିଲ୍ଲ ।
ଆମ କୁଲୁ ଆଖି ମଳି ବିଛଣାରୁ ଉଠିଲ୍ଲ
ମାଆଙ୍କର କାଖରେ ।
ବସି ସେ ଅନେକ୍ସ ଦେଲ୍ଲ କବାଟର ଫାଙ୍କରେ ।

ଖରା ପଡ଼ି ଗଲାଣି ।
ସାଙ୍ଗମାନେ ଆସିଯିବେ ସ୍କୁଲ ବେଳ ହେଲାଣି ।



'ସିତୁ' ଯାଇଥିଲା ଯାତରା ଦେଖି ଲେ
ମୁଁ ଡେରିଥିଲି କାନ ।
'ସିତୁ'ର ଆସିବା ଉଛୁର ହୋଇଲା
ଘରେ ଲାଗୁନାହିଁ ମନ ।
ଯାଆ ଆରେ ବାବା ଯାଆ ।
ପୁଅ ମୋର ଯେବେ ବାଟ ଭୁଲିଥିବ,
କାନ୍ଦୁଥିବ ଧରି ରାସ୍ତା ।
ଆଣ ତା'କୁ କାଖ କରି ।
କିଣି ଦେଏ ତାକୁ ବେଲୁନ୍-କଣ୍ଢେଇ
ଖେଳିବ ସେ ଘରେ ଧରି ।



ଝଡ଼ିଗଲା ଫୁଲଟିଏ ଉଡ଼ିଗଲା ଭଅଁର ।
ଆମ ପୁଅ ବୁଲିଯିବ କଲିକତା ସହର
କଲିକତା ସହରରେ ଖାଲି ଲୋକ ଗହଳି ।
ଆମ ପୁଅ ପାରିହେବ ଗଙ୍ଗାନଈ ପହଁରି ।
ସହରଟା ବୁଲି ସାରି ମାମୁଁ ଘରେ ରହିବ ।
ଯାହା ଦେଖିଥିବ ଆସି ଆମ ଆଗେ କହିବ ।



ଦାଦା ଆଣିଥିଲେ ଖେଳନା ବନ୍ଧୁକ,
ଜିତୁ ଖେଳୁଥିଲା ଧରି ।
ଓଳେଇ ବଳେଇ ଆସୁଛି ଦେଖିଲା
ମାରି ଦେଲା ଠୋ କରି ।
ବଳେଇ କରିଲା ହୁ ।
ଜେଜେ ଦେଖୁ ଥିଲେ,
କହିଲେ 'ଜିତୁ ରେ' ବଡ ବୀରଟିଏ ତୁ''



ବାପା, ଦାଦା ଖାଇ ଡାକିବା ପାଇଁକି
 ମାଆ ଆଗେ ଦେଲେ ଶିଖେଇ
ପାଠ ପଢ଼ିବାକୁ ହାତ ଧରି ପୁଣି
 ଅକ୍ଷରକୁ ଦେଲେ ଲେଖେଇ ।
ଉଡ଼ାଜାହାଜଟି ଉଡ଼ି ଯାଉଥିଲା
 ବାପା ତା'କୁ ଦେଲେ ଦେଖେଇ ।
ବୋଲେ ଖିଙ୍ଗିଲୁ, ଭଙ୍ଗା କାଚ ସବୁ
 ଖୁଡ଼ୀ ନେଇ ଦେଲେ ପକେଇ ।
ପାଣି ଢାଳି ଶେଯ ଓଦା କଲୁ ବୋଲି
 'ଅପା' ତା'କୁ ଦେଲେ ଶୁଖେଇ !
ଚଟକଣାଟିଏ ଥୋଇ ଦେଲେ ବୋଲି
 କାନ୍ଦିଲୁ ତୁ ଖାଲି ସକେଇ ।
ଜେଜେ ମାଆଙ୍କର ଦନ୍ତସନ୍ଧିଲାକ
 ଆଉଁ ସିଲେ ସିଏ କାଖେଇ !
ଜେଜେ କହୁଲେ : ରେ ପିଲାଟାକୁ
 କଣ ଦବ ନାହିଁ ଆଉ ରଖେଇ !
ସୁନା ପୁଅଟାକୁ ଟିକିଏ କଥାରେ ମାଡ଼
 ଦେଉଅଛ ଚଖେଇ
କାନ୍ଦ୍‌ନାରେ ପୁଅ ବଳ ହଟିଯିବ
 ଏମିତି ହେଇଲେ ଧକେଇ ।
ଲୁହ ପୋଛି ହସ-ଦାଦା ବୁଲେଇବେ
 ସ୍କୁଟରରେ ତୋତେ ବସେଇବେ ।



କେହି ମୋ ପୁଅକୁ ମାରବ ନାହିଁଟି
 ପୁଅ ସୁନା ପିଲାଟିଏ !
କ୍ଷୀର, ସର, ଭଲ ଗିଲାସେ ଆଣିଚ
 'ଢ଼ୁକୁ ଢ଼ୁକୁ' ପିଇ ଦିଏ !
 ମୋ ପୁଅପରି କିଏ ହେବ ? ।
ଉଡ଼ି ଯାଉଥିଲେ ଜେଟଣୀ ପାରିଟି
 ଧରି ଆଣି ସିଏ ଦବ ।



ଝର ଝର ମେଘ ବରଷି ଯାଉଚ
ଗୁଳରୁ ଗଡ଼ୁଚ ପାଣି ।
ବରବେଶ ହୋଇ ବେଙ୍ଗରଜା ଆସେ
ବେଙ୍ଗୁଲି ସାଜନ୍ତି ରାଣୀ ।
ଶୂନ୍ୟ ଘଡ଼ ଘଡ଼ ବାଜା ବଜାଉଛି
ବିଜୁଳି ଦେଖଣି ଜଳେ ।
"ଝିଙ୍କ ପୋକ" ଖଞ୍ଜ ନେଉଛ ଭାଇଟି
କୁଣିଆ ଚରଗୁ କରେ ।



ହୁଲଦୀ ବସନ୍ତ, କଜଳ ପାଢ,
ଉଦ ଉଦଲିଆ, ପରଜା ପଢ ।
ଶୁଆ, ସାଗୁ, କାଉ, ବଣି ଚଢ଼େଇ ।
ଘରଚଟିଆକୁ ସାଥିରେ ନେଇ ।
ଆସ ପୁଅ ସାଙ୍ଗେ ଖେଳିବ ଖେଳ,
ଏଇତ ପୁଅର ଖେଳିବା ବେଳ ।
ଛଆର କରଚ ପିଠା ମିଠେଇ ।
ତୁମ ସବୁଙ୍କୁ ମୁଁ ବାଣ୍ଟିବ ନେଇ ।
ଆମ ଘରେ ଅଛି କାକର ପାଣି,
କ୍ଷୀର, ଦହି, ଛେନା ସର ଲହୁଣୀ ।
ଖାଇବ, ପିଇବ-ଗୀତ ଗାଇବ,
ନାଚ, କୁଦି ସାରି ଘରକୁ ଯିବ ।
ନଈରେ ନଈ ! ଯାଉଚୁ ବହି
ଦେଖେଇ କେତେ ଛଟକ, ଛଇ ।
ଆମ ପୁଅ ତତେ ଦବ ବନ୍ଧେଇ ।
ବନ୍ଧେଇ ଦେଲେ ବିଜୁଳି ବଳ ।
ଦବରେ ବଳ
ଗୁଲିବ ପଙ୍ଖା ମାଲକୁ ମାଲ ।
ଭିତରେ ତା'ର ହେଉଁବେ ମାଛ
ଗୁରି ପାଖରେ ବଢ଼ୁତ ଗଛ
ପାଣି ମାଡ଼ିବ-ଫସଲ ହେବ
ସବୁରି ମୁହେଁ ଆହାର ଦବ ।



ଟିକନା କହିଲା 'ଭାରିମନ ମୋର
ଶୁଆଟିଏ ହେବା ପାଇଁ ।
ଏଗଛ ସେଗଛ ଉଡ଼ି ବୁଲିବି ମୁଁ
ଫଳ ସବୁ ଖାଇ ଖାଇ' ।
'ବାବୁନା' ହସିଲା, କହିଲା "ପଞ୍ଜୁରି
ମଜା ତୁ ଜାଣିନୁ ସତେ ।
ଧରିନେଇ ଲୋକେ ତାହାର ଭିତରେ
ବନ୍ଦ୍ କରି ଦେବେ ତୋତେ" ।



ମାମୁଁଙ୍କର ଝିଅ ଗହଣୀ

କଥା କହୁ କହୁ ହସି ଗଡ଼ିଯାଏ
ଖେଳୁଥାଏ ଚକା ଭଉଣୀ
ମାମୁଁ ଘର ଆଈ, ଅଜାଟି
ତାଙ୍କ ପିଲାକାଳ କଥା ରଚି ଗପ
କରନ୍ତି ସେ ଭାରି ମଜାଟି ।
ମାମୁଁ ଘର ଗାଆଁ ଗଡ଼ିଆ-
ଭିତରଟା ଯାକ କଇଁ ଫୁଲ ତା'ର
ଗୁରପାଖେ ଗଛ ନଡ଼ିଆ ।
ଆମ ମାମୁଁଘର ମାଇଁଟି
କୋଳରେ ବସେଇ ଗୀତ ଗାଇଦେଲେ
ସହଳ ହଏ ମୁଁ ଖାଇଟି ।
ଆମ ମାମୁଁ ପରବାଶରେ ।
ମୋ ପାଇଁ ଆଣିବେ କେତେ ଭଲ ଚଜ
ଆସିଲେ ଆଶିଣ ମାସରେ ।
ଆଶିଣ ମାସରେ ଦଶହରା ।
ବାଇଦ ବାଜିବ-ଦେବୀ ପୂଜା ହେବ
ଖୋଲା ହେବ ହସ-ପସରା ।
ବଡ ମାଉସୀ ତୁ ଯାଆ ଲୋ ବୁଲି
'ବୁବୁ' ଖାଇସାରୁ ଭାତ, ଡାଲି ।

ମୁହଁ ହାତ ସବୁ ଧୋଇ ।
ତା' ପରେ ଯାଇ ଆସିବୁ ଭୁଞ୍ଜ
ତୋତେ ଦେଖି ପିଏ ପଡ଼ିବ ଶୋଇ ।



ଝରରେ ଝର ଝାଣୁଆ ଝର
କାହିଁପାଇଁ ଆସି ଝାଳ ଗମ ଗମ ବୁହାଇ
ଆମର ମୁନାକୁ ଛଟ ପଟ କଲୁ,
ଦେଲୁ ନାହିଁ ଟିକେ ଶୁଆଇ ।



ଆସ ଗୋ ସଙ୍ଗାତ ଗାଧୋଇ ଯିବା
କଇଁଚ କାକୁଡ଼ ତୋଳି ଆଣିବା ।
କଇଁଚ କାକୁଡ଼ ମୁଣ୍ଡିରେ ପିତା
ସାଧବ ବୋହୂର ଘୃଣ ଦୁହିତା ।
ସବୁଠୁ ବଡ଼ଟି ସୁନ୍ଦରୀ ଡଗ
ତାଆଠାରୁ ସାନ ଅପଲ ଝଗ ।
ତାଆ ତଳ ଝିଅ ସୁନାର ଫୁଲ ।
ସବାସାନ ପରୀ ଗୁଣୀଟି ଭୁଲ ।



ଧାରେଣୀ ସୂତା ଗଜ ମୁକୁତା
ଛେଚଲେ ଛୁଟିକ ପଡ଼େ ।
ସରଗରୁ ଖସି ଗୋଟି ଗୋଟି ହୋଇ
ମାଟିରେ ଧୂଳରେ ଗଡ଼େ ।
ହାତରୁ ପଡ଼ଇ ବୋହି
ପାଟିରେ ଥୋଇଲେ
ପାଟି ଅଣଯାଏ
କଏ ସେ ପାଣିବ କହି ।



ଆ ଆ ପାଗ—ପାଣି ଟୋପେ ପିଇବୁ ।
ମୋ ହାତେ ଦେ ଧଗ—
ଭାତ ଡାଲି ଖାଇବୁ ।

ଉଡ଼ ଉଡ଼ ଖରରେ—ଘୁମ୍ ଘୁମ୍ ଗୀତ ଗାଇ
ଥକିଥିବୁ ପରରେ—ମୋ ପାଖରେ ଶୋଇବୁ ।
ଆମ ଘରେ ଅଛୁ ନାହାକା ଶୁଆଟି
ନାଆଁ ଟି ତାହାର 'ମୁଣ୍ଟୁ' ।
ଖନେଇ ଖନେଇ କଥା କହୁବାରେ
ମୁଣ୍ଟୁଟି ତ ଭାରି ପଟୁ ।
ବୁଟ ଦାନା ଖାଇ-ଦୁଧ ଟୋପେ ପିଇ
ପଞ୍ଜୁରୀରେ ସିଏ ଥାଏ ।
ରାତି ପାହୁ ଦାଗ ଫରଚ୍ଚୁ ଦିଶିଲେ
"ହରେ ରାମ କୃଷ୍ଣ" ଗାଏ ।

□

ହାପୁଡ଼ୁ-ଆପୁଡ଼ୁ ଦୁଇଟି ଭାଇ
ସାନ, ବଡ଼ ବାରି ହୁଅନ୍ତି ନାହିଁ ।
ସାଙ୍ଗ ହୋଇକରି ଖାଆନ୍ତି ଭାତ
ସାଥି ହୋଇକରି ଯାଆନ୍ତି ଯାତ ।
ଗୋଟିଏ ଶେଯରେ ଶୁଅନ୍ତି ଦୁହେଁ
ହସ ଫୁଲ ଫୁଟେ ତାଙ୍କର ମୁହେଁ ।
କଳି ଗୋଳ କେବେ କରନ୍ତି ନାହିଁ
ହାପୁଡ଼ୁ-ଆପୁଡ଼ୁ ଦୁଇଟି ଭାଇ ।

□

ଡେଙ୍ଗା ସର ସର ନଡ଼ିଆ ଗଛ
ଆକାଶକୁ ଟେକ ମଥା ।
ଚନ୍ଦ୍ର-ସୂର୍ଯ୍ୟ-ତାରା-ସଭିଙ୍କ ସାଥିରେ
ଦିନରାତି ହୁଏ କଥା ।
ଡେଙ୍ଗା ସର ସର ନଡ଼ିଆ ଗଛଟି
ପତର ତାହାର ସରୁ ।
ଆମେ ସବୁ ଯେବେ ଗଛ କାଟି ଦେବା
ମାଟି ପାଲଟିବ ମରୁ ।

□

ବୁଢ଼ୀଟିଏ ଥିଲା ପାକୋଇ
ନାଆଁ ଟି ତାହାର ନାକୋଇ ।
ସବୁବେଳେ ହୁଏ ଧକେଇ
ଟିକିକେ ପକାଏ ସକେଇ ।
ଧନ୍ଦ ଥରେ ଗୋଟେ ଚୋକେଇ
ଯାଇଥିଲା ଡାଳ ଗୋଟେଇ ।
ପାଇଲା ଗୋଟାଏ ନଟେଇ
ବୁଢ଼ିଟିଏ ଦେଲା ଖଟେଇ ।
ନାତୁଣୀକୁ ଦେଲା ପଠେଇ
କହିଲା "ନହୋଇ ମଠେଇ ।
ଶିଖିଥା ତୁ ସୂତା କଟେଇ
ଅଜାବକୁ ଦେବା ହଟେଇ ।
ଖାଇବା ସନ୍ଦେଶ, ମିଠେଇ
ହସି ହସି ଯିବା ଲଟେଇ ।

□

ବୁଢ଼ିଆଣୀ, ବୁଢ଼ିଅଣୀ
ସୂତା କାଟି ଦେଏ ।
ତୋ ସୂତାରେ ବୁଣିବି ମୁଁ
ପାଟ ଲୁଗାଟିଏ ।
ଚକ ମିକ ତା ଧଡ଼ିରେ
ଫୁଟାଇବି ଫୁଲ ।
ପଣତଟି କରୁଥିବ
ଆଖି ଝଲ ମଲ ।
ଆମ ମାଆ ପିନ୍ଧି ତାକୁ
ଯାତ ଦେଖି ଯିବେ ।
ତୋ ପାଇଁ ମୋ ପାଇଁ
ଖେଳନା ଆଣିବେ ।
ତୁ ଖେଳିବୁ ମୁଁ ଖେଳିବି
ଆମ ଘରେ ବସି ।
ବାଣରୁ ତୋଳି ଖାଇବା
କାକୁଡ଼ିର କସି ।

□

ଇଚଡ଼ି ମିଚଡ଼ି ଦେଉଥିଲ ଖେଚୁଡ଼ି
ସବୁଠୁ ଲାଗଇ ମିଠାଟି ।
ବାଟ ଘାଟ ନାହିଁ ପୂର ପଶିଯାଇ
କେମିତି ହୋଇଲା ପିଠାଟି ।
ପଇଡ଼ ପାଣି–ନଡ଼ିଆ ଜାଣି
କେଉଁ ବାଟ ଦେଇ ପଶିଲା ପାଣି ।
ଏମିତି ମଧୁର ଲାଗିଲା !
କୁନା ପିଉ ପିଉ ଟିକି ଗିଲାସରେ
ଆଉ ଟୋପେ ଦିଅ ମାଗିଲା ।



ଇଲି ଇଲିକା–ବାହୁଙ୍ଗି ଶିକା,
ମହାନଦୀ କୂଳେ ବୁଲିବୁ ଏକା
ନଈ ପାରି ହେବୁ ଚଢ଼ି ନଉକା
କପିଳାସ ବଣେ ଖାଇବୁ କୋଳି
କୋଳି ଖାଇସାରି ଖେଳିବୁ ଦୋଳି ।
ପହଁରି ଶିଖିବୁ ଦେବୀ ନଈରେ
ଠାକୁର ଦେଖିବୁ ପୁରୀ ଯାଇରେ ।
ଗଡଗଡ଼ିଆରେ ବାଲି ଯାତରା
ଖାଇବୁ ସେଇଠି ଲଡୁ–କାକରା ।
ବଡ଼ ଓଷା ଦିନ ଧବଳେଶ୍ୱରେ
ଗଜ ମଣ୍ଡା ପିଠା ଖାଇବୁ ତୁରେ ।
ଭୁବନେଶ୍ୱରରେ କୋରା, ଉଖୁଡ଼ା
ଖାଇ, ଘରପାଇଁ ବାନ୍ଧିବୁ ପୁଡ଼ା ।



ଖରାଦିନ ଆସିଗଲା
ଦୂବ, ଘାସ ସବୁ ମଲା ।
ଶୁଖିଲା ପୋଖରୀ, ନଈ ।
ମାଛଙ୍କୁ ପଡ଼ିଲା ଶନି ମହାଦଶା,
ସଭିଏ ଖୋଜିଲେ ଗାଈ ।

ଝାଳ ସର ସର ବୋହିଲା
ଦହି, ସରବତ, ସଜ ପଖାଳକୁ
ଆମ ପୁଅ ଭଲ ପାଇଲା ।



କଦଳୀ ଗଛଟି ପତର ଛତାଳେ
ଗଛକୁ ପୋଡ଼ିଲେ ଯାଖାର ।
ଗାଁ ଗୋଟାକରେ ସବୁର ଭିତରେ
ଆମର ପୁଅଟି ସାଉ ।
କାହାର ସାଥିରେ କରେ ନାଁ କଳି
ଅଝଟ ହୁଏ ନାଁ ଧୂଳିରେ ଗଡ଼ି ।
ମଇଳା କରେନାଁ ଦାନ୍ତଟି ଜମା
ସୁତୁରୁ ରଖଇ ସେତେକ ଜାମା ।
ଖାଇବା ଆଗରୁ ଧୁଏ ସେ ହାତ
ଛବି ବହି ଧରି ପଢ଼ଇ ପାଠ ।
ସବୁରି କଥାକୁ ମାନଇ ସିଏ
ତାଆ ଭଳି ନାହିଁ ପିଲଟି କିଏ ।



ଆଖୁ ପତରଟି ନହୁ, ନହୁକାରେ !
କାଉଁଶ ପତର ସରୁ ।
ପିଇଦେ ଧନରୁ କ୍ଷୀର ଟାଟିଆକ,
କାହିଁକି ଜଞ୍ଜାଳ କରୁ ?
ବାପା ଯାଇଛନ୍ତି କଟକ ସହର
କାଲିକି ଆସିବେ ଫେରି ।
କେତେ ନୂଆ ଚିଜ ତୋହର ପାଇଁକି
ଆଣିଥିବେ ସାଙ୍ଗେ ଧରି ।



ସ୍କୁଲରେ ପିଲାଏ ବଣକୁ ଯିବା
ବଣରେ ପାଚିଲା ଆମ୍ବ ଖାଇବା ।

ଆମ୍ବ ଖାଉ ଖାଉ ଆସିଲେ ବାଘ
ଦଉଡ଼ିରେ ତା'କୁ ବାନ୍ଧିବା ଆଗ ।
ମିଳି ମିଶି ତା'କୁ ଆଣିବା ଟାଣି
ପିଇବାକୁ ଦେବା କୁଣ୍ଡା ତୋରାଣି ।



ବାଘ, ଭାଲୁ, ଘୋଡ଼ା,
ସିଂହ ଯୋଡ଼ା, ଯୋଡ଼ା ।
ଠେକୁଆ, ହରିଣ, ହାତୀ,
ନେଉଳ ଗଧ ପାଢି ।
ଗାଈ, କୁକୁର, ପୁଷି,
ଛେଳି, ମେଣ୍ଢା ମୂଷି ।
ଶୁଆ, ବଣି, କାଉ,
ଏମିତି କେତେ ଆଉ ।
ସଭିଏ ତୋ'ର ଗୃହ,
ପଢ଼ାରୁ ବସି ପାଠ ।
ସୁନା ପୁଅଟି ମୋର,
(ତାଙ୍କୁ) ମାରବୁ ନାହିଁ ମାଡ଼ ।



ବାଲ ପଛପଟେ ବାଉଁଶ ବୁଦାଲୋ
କାଟିଗଲ ସବୁ ବତା ।
'ମିଳି' ଯାଇଥିଲା ପାଠ ପଢ଼ିବାକୁ
ଭାଇ ଧରିଥିଲେ ଛତା ।
ଛତାରେ ରେଶମ କନା ।
ଧନ ରଥେ ବଳେ ଧନ ଠାକୁରଙ୍କୁ
ମନ ଥୟ କର ଅନା ।



ବାଇଆ ମାଆଙ୍କେ ସରୁ କାଟେଣୀ
ପୁଅଙ୍କୁ ପିନ୍ଧାଇ ପାଟପଡନା ।
ଝିଅଙ୍କୁ ପିନ୍ଧାଉ ନେତ ।
ଆପେ ପିନ୍ଧିଥାଉ କଳାମେଘି ପାଟ
ସମ୍ବଲପୁରର ସେ'ତ ।
କଳା ମେଘ ବରଷିଲା ।
ବାଇଆ ମାଆର ଟିକି ପୁଅଟିତ
ଓଦା ଜୁଡୁ ଜୁଡୁ ହେଲା ।



ବାଳିଆ ବଳଦ ଗଳାରେ
ଘାଣ୍ଟି ଧୁଡୁ ଧୁଡୁ କଲାରେ
ଭାତ, ଡାଲି ଦେଲି ଖାଇ
'କୁନା ପାଇଁ କିଛୁ ନାହିଁ ।



କଥା ବୁଢା ମୁନ୍ଦେ ବାଲୁଆ ଛୁଆ
ଡାକ ଦେଉଥିଲେ ହୁକ୍କା ହୁଆ ।
ବସ୍ତା ଖାତା ମାନ ଯତନେ ଧରି
ଭୁଆ ଯାଉଥିଲା ଇସ୍କୁଲ କରି
ଡାକିଲା ଆସରେ ପଢ଼ିବ ପାଠ,
ଇସ୍କୁଲ ଏଇଠୁ ଅଳପ ବାଟ ।



ବାହାରେ ବାଃ କୁନିର ଆଜି
କଣ୍ଢେଇ ବାହାଘର ।
ମିନିର ଝିଅ କନିଆଁ ଆଉ
କୁନିର ପୁଅ ବର ।
ଶଙ୍ଖ ବାଜିବ, ବାଜା ବାଜିବ
ପଡ଼ିବ ହୁଲ ହୁଲି ।
ବୋହୂକୁ ନେଇ ଆସିବ ବର
ଦୋଳାରେ ଝୁଲି ଝୁଲି ।

ବୋହୂ ପରଶା  ଖାଇବ କୁନି
ପିଢ଼ା ପକେଇ ବସି ।
ହାତଟି ଧୋଇ, ପଢ଼ିବ ଶୋଇ
ବୋହୂଟି ଦବ ଘଷି ।



ବାଇଚୁଙ୍ଗୁଣ୍ଟି ନଖାଏ ଖୁଦ
ପୁଅ ନାଆଁ ଦେଲା "ପୋହଲା ବଦ ।"
ପୁଅ ଶୁଆଇଲା ହୁଡ଼ ମୁଣ୍ଡରେ,
ଜନ୍ଦା କାମୁଡ଼ିଲେ କାନ ମୁଣ୍ଡାରେ
କହିଁ କହିଁ ହୋଇ କାନ୍ଦିଲା ପୁଅ,
ମେଘ ଧାର ପରି ଝରିଲା ଲୁହ ।
ପୁଅର ଲୁହକୁ ପୋଛିଲା ମାଆ,
କୋଳରେ ବସାଇ କହିଲା "ଆହା ।
ଝିଙ୍ଗା କରିଥିଲା ଘୁଗୁଳ ଆଣି,
ଖୋଇ ଦେଲା ପୁଅ ମନକୁ ଜାଣି ।



ଦେଖରେ ଦେଖରେ ଗୁଣ୍ଡିଚ
ପାଚିଲା ପିଜୁଳି ଝୁଣ୍ଡୁଚ ।
ପାଇଲେ ସେ ଖାଇ ଦବଟି,
ବସାକୁ ପଳେଇ ଯିବଟି ।
ଲାଙ୍ଗୁଡ଼ ଲମ୍ବେଇ ଦେଇଚ,
ଗଛ ଡାଳ ଯାକ ଡେଉଁଚ ।
ଡାଳରୁ ଝଡ଼ୁଚ ପତର,
ଗୁଣ୍ଡିଚ ମୂଷାଟି ବଜାର ଯାଇ ।
କିଣି ଆଣିଥିଲା ଅତର ।



ଆ'ରେ ଆ କୁନି ବାଛୁରି
ଘାସ, କୁଣ୍ଡା ଖାଆ
ଖପର, ଖପ ଡେଇଁ ଡେଇଁ ତୋ
ମାଆ ପାଖକୁ ଯାଆ ।

ମା'ଆଜି ତୋର ଦେଲେରେ କ୍ଷୀର
ପିଇବ ଆମ ପୁଅ ।
କ୍ଷୀରରୁ ମୁଁ କରିବି ଦହି,
ଛେନା, ଲହୁଣୀ, ଘିଅ ।



ଶୁଆର ନାଲିଆ ଥଣ୍ଟ
ସକାଳ, ସଞ୍ଜରେ ଦେଉଳରୁ ଶୁଭେ ।
ଆଳତି ଧୂପର ଘଣ୍ଟ ।
ଘଣ୍ଟ ବାଜେ ଢାଉଁ ଢାଉଁ,
କୁନା ଖାଉଥିଲା କାକରା ଗୋଟିଏ
ଝାମ୍ପି ନେଇଗଲା କାଉ ।
କଇଁ କଇଁ କାନ୍ଦେ କୁନା ।
ଆଉ ଗୋଟିଏ ମୁଁ ଦଉଚି ନେଏରେ
ମନ କର ନାହିଁ ଊଣା ।



ନଳି ଗୋଡ଼ିଆ ବଗ-ବୁଲଇ ଡଗ ଡଗ
ମାଛକୁ ଥାଏ ଛକି- ପଡ଼ଇ ନାହିଁ ଥକି ।
ପାଇଲେ ଗୋଟେ ଝାଆଁକୁ କରି
ଗିଳି ଦିଏ ସେ ଅଗ ।



ନେଉଳ କାନରେ ଗୁଣା,
ବସିଲେଇ କରୁଚି ଠାକୁର ପୂଜାଟି
ମୂଷା ଧୂପଦିଏ ଝୁଣା ।
ଚୁଚୁନ୍ଦରା ଦୀପ ଜାଳେ ।
ଡାମରା କାଉର ଆଖି ଲଖି ଅଛି,
ଲଡ଼ୁ, ଗଜା ଭୋଗଠାରେ ।



ବଗ ଯାଇଥିଲା ନଈ ଆଡ଼େ ବୁଲି
ଧରି ଆଣିଥିଲା ମାଛ ।
ବରାଦ କରିଲା ବଗୁଲୀକୁ ଡ଼ାକି
ଯଅଳ ଯଅଳ ବାଛ ।
ବଗୁଲୀ ବାଛିଲା ବସି ।
ପିଆଣିଆ ଚିଲ ଉଡ଼ି ବୁଲୁଥିଲା
ଝାମ୍ପି ନେଇଗଲା ଆସି ।



ମୋ ପୁଅ ଖେଳିବ ହୋଲି ।
ଅବିର ସବୁକୁ ଅଜା, ଆଇଙ୍କର
ଦକ୍ଷିଯାକ ଦେବ ବୋଳି ।
ଆସିଗଲେ ସାଙ୍ଗ, ସାଥି ।
ପିଚକାରୀ ଧରି, ରଙ୍ଗ ପାଣି କରି
ଖେଳରେ ଯିବ ସେ ମାତି ।



ବତାସ ପବନ ହେଲା
ପୁଅକୁ ଉଠେଇ ଦେଲା ।
ଶୋଇଥିଲା ଆମ ମୁନା
ନିଦ ତା'ର କଲା ଚୂନା ।
ସପନରେ ଧରି ମିଠେଇ
ଖାଉଥିଲା ସିଏ କଠେଇ ।
ଆଖି ତା'ର ଦେଲା ଫିଟେଇ
ମା' ପାଖକୁ ଦେଲା ପଠେଇ ।



ଧୋ' ରେ ବାଇଆ ଧୋ
ଆମ ପୁଅ, ଝିଅ ପଢ଼ିବେ ବସି
ହୁଅନା ତୁ ଘୋ, ଘୋ ।
ତୁନି, ତାଳି ହୋଇ ବ' ।
ପଢ଼ିସାରି ତତେ ଡ଼ାକିବେ ଯେବେ
ଉଠି ଆସିବୁ ତୁ ଯଅଳ ତେବେ ।

ମଝି ଅଗଣାରେ ପକାଇ ସପ
ଜେଜେମା'ଙ୍କ ଠାରୁ ଶୁଣିବ ଗପ ।



ମିଆଉଁ ମିଆଉଁ ବଲେଇ ବୋବାଏ
କୁକୁର ବୋବାଏ ଭୋ ।
ହମ୍ବା ହମ୍ବା ଡିକ ବାଛୁରୀ ବୋବାଏ
ଭାଲୁଆର ହୁକ୍‌କେ ହୋ ।
କାଆ-କାଆ-କାଆ କାଉ ରାବ ଦଏ
କୋଇଲିଟି କୁହୁ, କୁହୁ ।
ଆମ ମୁଖ କଥା ସବୁଠାରୁ ମିଠା
ସତେକି ଝରଇ ମହୁ ।



ଉଦୁ ଉଦୁମା-ତାଳ ଗୋଟମା
ଘୁଙ୍ଗୁର ପିନ୍ଧି ନାଚୁଛ ଯୁନି
ଝୁମୁରୁ ଝୁମ୍‌, ଝୁମ୍‌କୁ ଝୁମା ।
ଗଧ ବଜାଏ ଡୁବି ତବଲା
'ବାଘ'ର ହାତେ ଖୋଲ ।
'ହନୁ' ମୁହଁରେ ଯୋଡ଼ି ମହୁରୀ
ହାତୀ ଗଳାରେ ଢୋଲ ।
ଟୋପି ଲଗାଇ ବାଜୁଛ ଭାଲୁ,
ବାଦାମ, ବାରମଜା ।
ବଣ ଭିତରେ ନାଚ ହଉଛି,
ଦେଖିବ ଆସ ଅଜା ।



ଝଡ଼ ବରଷା
ଖୁଙ୍ଗି ଦେଇଗଲା ଚଢ଼େଇ ବସା ।
ଚଢ଼େଇ ତୁ ଆମ ଘରକୁ ଆ
ଯାନ୍ଧି ସାରଲେଣି ଆମର ମାଆ ।
ଭାତ, ଡାଲି, ଭଜା, ଛଅଣ ଖାଇ
ମୋ ପାଖରେ ଆସି ପଡ଼ିବୁ ଶୋଇ ।



ଉଡ଼ା ଜାହାଜରେ ଉଡ଼ାଜାହାଜ
ବୁନା ବୁନଙ୍କି ତୁ ଉଡ଼େଇ ନେଏ ।
ଦେଶ, ବିଦେଶ ବୁଲେଇ ଦେଏ
ଦୁନିଆଁ ଟାକୁ ଦେଖେଇ ଦେଏ ।
ବଉଦ, ଦୋଳାରେ ଝୁଲେଇ ଦେଏ
ସ୍ୱର୍ଗ ମୋଢ ସାଙ୍ଗେ ମୂଲେଇ ଦେଏ ।
କୁରୁ କୁରୁ କର ହସେଇ ଦେଏ
ମୋ କୋଳରେ ଆଣି ବସେଇ ଦେଏ ।
ରାତି ପାହି ଯେବେ ସକାଳ ହବ
କାଉ ଆସି କାଆ କାଆ ରାବିବ ।
ବଗିଚ୍ଚା ହୋଇବ ଫୁଲରେ ଭରି
ଗୁଲରୁ ଗଡ଼ିବ କଅଁଳ ଖରା ।
ଖରା ନ ପଡ଼ୁଣୁ ଉଠିବ ଯିଏ
ସୁନା ପୁଅ ଝିଅ ହେବଟି ସିଏ ।



ଚେଙ୍ଗ, ବେଙ୍ଗ ଦୁହେଁ ବସିଲେ ମିତ
ପୋଖରୀ କୂଳରେ ଗାଇଲେ ଗୀତ ।
ନାଚଲେ ଧିନାକ, ତାଧିନ ଧିନ
ସୁନା ଝିଅଟିଏ ଆମର ମିନ ।



ଘଣ୍ଟା ବୁଲେ ଟିକ୍ ଟିକ୍
ଆମ ପୁଅର କାମଟି ଠିକ୍ ।
ଅସଲ୍ ସତ କଥାଟି ତା'ର
ଜମା ସେ କାନ୍ଦେ ନାହିଁ ।
ଝରଇ ଢଏ ମହୁ ଝରଣା
ବସିଲେ ଗୀତ ଗାଇ ।
କାହାର ସାଙ୍ଗେ ଲଗାଏ ନାହିଁ
ଜମାରୁ ଛିକ୍ ଛିକ୍ ।
କୁନି ପାଦରେ ଗଡ଼ାଇ ବଲ୍
ହସଇ ଫିକ୍ ଫିକ୍ ।



ବଲେଇ ଧରି ପରବା ମୁଣ୍ଡି
ଓଧକୁ କହେ "ରଖ୍ ରଖ୍" ।
ହନୁଠୁ ଖାଇ ଜବର ମାଡ଼
ବିଲୁଆ କାନ୍ଦେ ସକ୍ ସକ୍ ।
ବାଘ ଖାଇଛି ମାଉଁସ ପେଟେ
ଦାନ୍ତ କରୁଛି ଭକ୍ ଭକ୍ ।
ବୁଢ଼ା ଚାଲୁଛି ବାବାଜୀ ହୋଇ
ମାଳି ଗଡ଼ାଏ ଠକ୍, ଠକ୍ ।
ହରିଣ ଧାଇଁ ଝରଣା ଯାଇ
ପାଣି ପିଏ ସେ ଢ଼କ୍ ଢ଼କ୍ ।
ହାତୀ ଗୋଡ଼ରେ କଣ୍ଟା ପଶିଛି
ହେଉଛି ଘାଆ ଧକ୍ ଧକ୍ ।
କୁକୁଡ଼ା ମଥାରେ ଜରି ଟିକିଲି
ଦିଶୁଛି କେଡ଼େ ଜକ୍ ଜକ୍ ।
ମାଆଙ୍କ ହାତେ ମିଠେଇ ଦେଖି
କୁନାର ପାଟି ଝକ୍ ଝକ୍ ।



ନାଉଛି ମାରୁଛି କାଡ

ଟିକି ଗଛଟିର କଅଁଳ ପତରେ
କେହି ମାର ନାହିଁ ହାତ ।
ଗଛରେ ଫଳିବ ଫଳ ।
ପାଚିଲା ଫଳକୁ ଖାଇଲେ ସବୁରି
ଦେହରେ ବଢ଼ିବ ବଳ ।
ଗଛ ପତ୍ର ଦିଏ ଛାଇ ।
ଝାଳ ଝରି ହେଲେ ସଭିଙ୍କର ମନ
ଛାଇରେ ବସିବା ପାଇଁ ।



ଅଜାଙ୍କର ମୁଁ ନାତି ।
ଗୁଣ୍ଡିଛି ମୋର ସାଥି ।

ସଙ୍ଗାତ ସାଙ୍ଗ—ଶୁଆ,

ମଇଁଷ—ଗାଈ ଛୁଆ ।

ଭଲ ପାଏ ମୁଁ ବଗ, ବଗୁଲି,

ବଣି, ଠେକୁଆ କୁଆ ।



ଅମସ୍ଥ ମାଛ

ବାଉ ପଛଆଡ଼େ ସାହାଡ଼ା ଗଛ ।

ସାହାଡ଼ା ଗଛରେ ବଣିର ପୁଅ

ମାଆ ପାଇଁ ଝୁରି ଡାକୁଛୁ କୁହ ।

ମାଆ ତ ଯାଇଛୁ ଆଧାର ଆଣି

ଆସିଲେ କରିବ ପଡରେ ପାଣି ।

କୋଳରେ ବସେଇ ଖୁଆଇ ଦବ

ପିଠିକୁ ଆଉଁସି ଶୁଆଇ ଦବ ।



ଝୁରୁଲୁ ପୁରୁଲୁ ଲଟେଇ

ଡୋ-ଡୋ-ବାଣ ଫୁଟେଇ ।

ଢୋଲ-ପେଁକାଳି ବଜେଇ

ଫୁଲରେ ମଟର ସଜେଇ ।

ଆସୁଚ ବଲୁଆ ବର ।

ହଳଦୀ ଲଗେଇ ସିନ୍ଦୁର ପିନ୍ଧେଇ

କନିଆଁକୁ ସଜକର ।

ସଭିଲେ କୁଣିଆଁ ଚରନ୍ତୁ

ବାହାଘର ସାର ବର ବାହୁଡ଼ିବ

ଦନ ହୋଇଗଲା ଫେରନ୍ତୁ ।



ଉକୁଲୁ ମୁକୁଲୁ ପୁକୁଲୁ ପୁଟି

ନେଉଳ ଦଉଚ ଧାନକୁ କୁଟି

ଗୁଉଳ ପାଚୁଡ଼େ ଲେଞ୍ଚଣୀ ପାଗ

ଦନ୍ଦ କାଳିଦଏ ଟାଣୁଆ ଖଗ

ଗଣ୍ଣ, ବାଲ୍‌ଟି ଆଣି
ବଣି କାଢ଼େ ପାଣି ।
'ଚୂଟିଆ ପାରେ ଚୂଲ୍‌।
କାହ୍ନୁ ଆଣୁଚ ଶୁଖିଲା କାଳ
ଗଛରୁ ଗଛ ବୁଲି ।
ଭାତ ହେବ, ଡାଲି ହେବ,
ହେବ ଖଟା, ଖିରି ।
ସଭିଏ ମିଳି ଭୋଜି ମଉଜ,
କରିବେ ମନ ଭରି ।



'କକ'ରେ କକ ବୋବେଇ ଦେଏ
ସେମାନେ ସବୁଙ୍କୁ ସେବେଇ ଦେଏ ।
ମାଉଁସ ଭାତ ଖାଇବୁ
ମଜାରେ ଏଠି ରହିବୁ ।
ରହିବା ପାଇଁ ଦେବି ମୁଁ ଘର
ଶୋଇବା ପାଇଁ ପଲଙ୍କ ସାର ।
ପିନ୍ଧିବୁ ଯୋଡା, ଗରମ ଜାମା
ଥରିବୁ ନାହିଁ ଶୀତରେ ଜମା ।
ବରଷା ଦିନେ ତୋ ମନ ଜାଣି
କିଣି ଦେବି ମୁଁ ଛତା ।
ଖରା ଦିନରେ ସର୍ବତ ପିଇ,
ଥଣ୍ଡା ରଖିବୁ ମଥା ।



ଅଜାଟିକୁ ଆଇଟିଏ
ନାତିଟିକୁ ନାତୁଣି ଟିଏ ।
ନାତି ନାଆଁ ଭୋଳା
ନାତୁଣୀ ଫୁଲେ ଦେଲା ।
ଭୋଳାର କାନ କଟା
ଖାଏ ସେ ଭାତ ଖଟା ।
ଖୁଜୁ ବୁଢ଼ିଆ ପିଲା
ସବୁ କଥାରେ ଢିଲା ।

ନାତୁଣୀ ନାଆ "ଯୁଲେଇ"
ଆଣ ନଅନ୍ତୁ ବୁଲେଇ ।
ଶୁଏ ଅଈ ପାଖରେ
ବସେ ତାଙ୍କ କାଟରେ ।
ପାଖ ଜମା ଛାଡ଼େନା—
ରଗି ରୁଷି ଗଢ଼େନା ।



ଚୂଢ଼କୁ ମୂଷିରେ ଚୂଢ଼କୁ ମୂଷି ।
ମିଛଟାକୁ ପିନା ହଉଚୁ ଖୁସି ।
ଛକଲାଣି ତୋତେ କୋଦେଇ ପୁଷି ।
ପଳେଇ ଯାଅରୁ ଗାତକୁ ଖସି
ନହେଲେ ପଛକୁ ଖାବରୁ ଦଷି
କୋଦେଇ 'ପୁଷି'ର ମୁଣ୍ଡରେ ଚଡା
ଶୁଖୁଆ ତାହାକୁ ଲାଗୁଚ ପିଡା,
ଶୁଖୁଆ ଦେହରେ ରକତ ନାହିଁ,
ଖାଇ ଖୁସି ହବ ତୋତେ ସେ ଖାଇ ।



ଆଜି ଆମ ପୁଅ ଜନମ ଦନ ।
ଖୁସିରେ ଭସୁଚ ସଭିଏ ମନ ।
ଆସିଛନ୍ତି ତା'ର ଯେତେକ ସାଥି ।
ଯାଇଛନ୍ତି ସବୁ ଖେଳରେ ମାତି ।
ମାଆ ରାନ୍ଧିଛନ୍ତି ଖିରି, ଖେଚେଡ଼ି
ଖଟା, ଶାଗ, ଭଜା, ଦହି ପାଚେଡ଼ି
ସଭିଙ୍କି ବସେଇ ପରଶି ଦେବେ
ଖାଇ ପିଇ ସବୁ ଘରକୁ ଯିବେ ।



ଗଧ ଖୋଲିଚ ଡାକ୍ତର ଖାନା, ଡାକୁଚ ଆସ ଆସ
କିଏ ଖୋଜୁଚ ଅଣ୍ଡା-ଶରଦ- କିଏ ଖୋଜୁଚ କାଶ
କାହାକୁ ଝାଡ଼ା, କାହାକୁ ଜର
କାହା ଆଖିକୁ ଦିଶୁନ ଭଲ ।

କାହାର ପେଟ ଫାମ୍ପି ଖାଇ
ବଲ ନାହିଁ କଏ ପାରୁନ ଚାଲ ।
ଆସ ଦେଖିବ ମୁଁ ଡାକ୍ତର
ଔଷଧ ଦେବ ଥରକୁ ଥର ।
ତୁମ ବାବୁ ବା ମୁହଁରେ ମୁହିଁ ଦେଖାଇ ଦେବ ଦୁଧ ।



ଦାଆ କାଟି ଯାଏ ଧାନ ।
'କୁଲୁ' ଚାଲୁଥିଲେ ପାଦ ତଳେ ତା'ର
ଫୁଟୁଥାଏ ଫୁଲ ମାନ ।
କହିଲ ଚଇତ ବାଆ ।
ଗୁଲୁ ଗୁଲୁ କରି କହିଦେବ ସିଏ
କଅଣ ତାହାର ନାଆଁ ।
ପୋଖରୀରେ ଫୁଟେ କଇଁ
ଜମାରୁ ତାହାକୁ ଚାହିଁଛି ବରଷ
ପଡ଼ିଲଣି ସିଏ ବହି ।
ମାଘ ମାସେ ଖର ଶୀତ ।
କେଜେ ମାଆ କୋଳେ ଗାଇଲଣି ବସି
ମଜା-ମଜକଆ ଗୀତ ।
ଖରା ବରଷାକୁ ଛତା ।
ସବୁର ଆଖିରୁ ନିଦ ଗୁଡ଼ିଯିବ
ଶୁଣୁଥିଲେ କୁଲୁ କଥା ।



ବାଆ ଚଢ଼େଇରେ ବାଆ ଚଢ଼େଇ,
ଯା'ଆ ଉଡ଼ିଯା'ଆ ଡେଣା ମେଲେଇ ।
ମାଡ଼ି ଆସିଲଣି ବରଷା ବାଆ,
ଚାହିଁ ରହିଥିବ ତୋହର ମାଆ ।
ତୋତେ ଦେଖି ସିଏ ଉବରେ ହସି
କାଖ କରି, ଉବ ପିଠି ଆଉଁସି ।
କୋଳରେ ବସାଇ କରିବ ଗେଲ
ଲଗାଇ ଦବଟି ହଳଦୀ ତେଲ ।

ଝିଙ୍ଗା-ପୁଙ୍ଗା, ମିଠା ଦେବ ଖୁଆଇ
ତାଳ ଝୁଲଣାରେ ଦେବ ଝୁଲାଇ ।
ପାଖରେ ଶୁଆଇ କହିବ କଥା,
'ହୁଁ' ମାରିବୁ ତୁ ହଲାଇ ମଥା ।



ଦେଶରେ ଜହ୍ନ ତୁ ଆକାଶୁ ଗୁହିଁ
ତୋ ପାଖକୁ କୁନା ଯିବନି ଧାଇଁ ।
ରକେଟ୍‌ରେ ବସି ଯିବ ସେ ଗୁଲି
ତୋ' ଘରେ ବସି ମାରିବ ତାଳି ।
ସାଙ୍ଗେ ନେଇଥିବେ ଟିକଲ୍ ମୀନା ।
ନାଚବେ ସଭିଏ ତା ଧିନ ଧିନା ।



ଖଗ୍ ମାଆ ଖଗ୍ ଦେ'
ପୁଅର ଜାମା ଶୁଖେଇ ଦେ ।
ଅମ୍ବ ପଣସ ପଚେଇ ଦେ
ନେପାଳୀ ମୁଷାକୁ ନଚେଇ ଦେ ।
କାନ୍ଦୁରୁ ପୁଅକୁ ହସେଇ ଦେ
ଓଠରୁ ମୁକୁତା ଝରେଇ ଦେ ।



କାହୁ ନେଇଗଲା କାଣ୍ଡ
ବାଅ ଆସିଲେଣି ଦୋଳ ଖେଳ ଶାଇ
ହବୁଲ ପଡ଼ଇ ଦାଣ୍ଡ ।
କାହୁ ଗ୍ରବେ ଘନ ଘନ ।
ଯେତେ ଭାତ, ଡାଲି ମାଛ ଖାଉଥିଲେ
'ମିଠା' ରେ କୁନାର ମନ ।
ହଡ଼ ହଡ଼ ଗଲା କାହୁ ।
କୁନର କାନରେ ସୁନାର ଫୁଲଲେ
ଦିଶୁଥାଉ ଦାହୁ ଦାଉ ।
କାହୁକୁ ହେଲାଣି ଜର ।
କୋଇଲିକ ଡାକ, ହଡ଼ ହଡ଼ ଯାଇ
ଡାକ ଆଣୁ ଡାକତର ।



ଗଛଲତା ସବୁ ଆମ ହିତକର
ତାଙ୍କଠାରେ ଦୟା- ଭଲ ନିକର ।
(ତାକୁ) ହାଣିବ ନାହିଁ କ ମାରିବା ନାହିଁ
ସେ ଦେବ ଆମକୁ ଶୀତଳ ଛାଇ ।
କେତେ ଫୁଲ ଫଳ କେତେ ପତର
ଗଛଲତା ସବୁ ଆମ ହିତକର ।



ଗାଈ ଖାଏ କୁଣ୍ଡା-ପେଜ, କୁନା ପିଏ କ୍ଷୀର
ପେଟେ ପେଟେ କ୍ଷୀର ପିଇ ହବ ସିଏ ବୀର ।
ଗାଈ ଗଲେ ଚରିବାକୁ ବାଛୁରି ଘରେ
ମାଆକୁ ପାଇଲେ ପାଖେ ହମ୍ବା ହମ୍ବା କରେ ।



ଘର ପାଖେ ଥିଲେ ବଗିଚା ଗୋଟିଏ
ସୁନ୍ଦର ଦିଶଇ ଅତି ।
ନାଚି, ନାଚି ଫୁଲ ସାଥିରେ ଖେଳନ୍ତି
ମହୁମାଛି, ପ୍ରଜାପତି ।



ଘିରି ଘିରି ଘିରି ବୁଲୁଚି ବିଜୁଳି ପଙ୍ଖା
ଖରାଦିନ ଯାକ ଗରମକୁ ନାହିଁ ଦେଖା ।



ତୁଳି ଆଣିଦିଅ, ରଙ୍ଗ ଆଣିଦିଅ
ତୁଳି, ରଙ୍ଗରେ ଛବି ଆଙ୍କିବ
ଆମରି ସୁନା ପୁଅ ।
ଆଙ୍କିବ ଗଛ, ପତର, ଡାଳ
ପାହାଡ, ନଈ, ପୋଖରୀ, ନାଳ ।
ନାଚି ନାଚି ଫୁଲ-ଫଳ ବଗିଚା
ଆଉ ଯେତେ ଯାହା-କରିବ ଇଚ୍ଛା ।



ଧଳା 'ଖଇ' ଧଳା 'ମଲ୍ଲୀ' ଧଳା ପୁଣି 'ଟଗର'
ଯୁଇ, ଯାଇ, କେନା, ଧଳା, ଧଳା ଚମ୍ପା- ମନ୍ଦାର ।
ଧଳା 'ଡାଳିମ୍ବ ଫୁଲ' ଧଳା ଗଙ୍ଗ ଶିଉଳି
ଧଳା ବଗ-ଧଳା ଚୂନ, କାଳୁ ହଏ ଧଉଳି ।



ଭଲ ପିଲାଟିଏ ଆମର ପୁଅ
କାହାର ପାଖରେ ଅଝଟ ନୁହେଁ ।
ପାହା ବାଢ଼ିଦବ ଖୁସିରେ ଖାଇ
ମାଆଙ୍କ କୋଳରେ ମଡ଼ଇ ଶୋଇ ।
ଖାଇ ସାରି ଶୋଇ ଉଠିଲେ ଖେଳେ
ବାହାରେ ବୁଲେନାଁ ବରଷା ବେଳେ ।



କଳା କାଉ ଗବଢ଼ଏ ଗଛ ପାହୁ ପାହୁ
କଳା କୋଇଲଟି ଗାଏ "କୁହୁ କୁହୁ କୁହୁ" ।
କଳା କଜଳପାତିଟି ଉଡ଼ି ଉଡ଼ି ବୁଲେ
କଳାକଳା ଜାମୁକୋଳି ପେନ୍ଥା ପେନ୍ଥା ଝୁଲେ ।
ଆଖିରେ କଜଳ ଗାର ଝଲମଲ ଦିଶେ
କଳା ଟୋପାଟିଏ ଦେଲେ କପାଳଟି ହସେ ।



ସଞ୍ଜ ହେଲେ ଚଉରା ମୂଳେ
ଦୀପଟି ମାଆ ଦିଅନ୍ତି ଜାଳି ।
ଆମର କୁନି ଓଳଗି ହୁଏ
ଦିଅଙ୍କ ପାଖେ ଜଣାଣ ବୋଲି ।
ସପଟି ପାରି-ସିଲଟ ଧରି
ମନ ଖୁସିରେ ବସଇ ପଢ଼ି ।
ପଢ଼ା ସରିଲେ, ଖାଇ ସାରିଲେ
ଶେଯ ଉପରେ ପଡ଼ଇ ଗଡ଼ି ।



ନାଲି କୃଷ୍ଣଚୂଡ଼ା ନାଲି ମନ୍ଦାର
ନାଲି ରଙ୍ଗଣୀଟି ଭାରି ସୁନ୍ଦର ।
ପୋଖରୀକ ଶୋଭା ନାଲିଆ କଇଁ,
ପାଦ ଶୋଭା ନାଲି ଅଳତା ପାଇଁ ।
ନାଲିଆ ଟିକିଲି ନାଲି ସିନ୍ଦୂର
ହୋଲି ଖେଳ ଲାଗି ନାଲି ଅବିର ।
କୁକୁଡ଼ା ମୁଣ୍ଡର ମୁକୁଟ ନାଲି,
ନାଲି ଶଙ୍ଖା, ଶାଢ଼ୀ-ନାଲିଆ କାଳି ।

ନାଲି ବେଲୁନ୍‌ରେ କୁଲୁର ଆଖି
ଆଉ କେତେ ନାଲି ଚହଲ ବାଙ୍କା ।



କାନ୍ଦନାରେ ଧନ ଆଖିକୁ ମଳି
ହାତରୁ ଆଖିରେ ଲାଗିବ ଧୂଳି,
କଥା ମାନି ତୁ ନ କାନ୍ଦିବୁ ଯେବେ
ରସଗୋଲା ତତେ ଦେବି ମୁଁ ତେବେ ।
କାଖ କରି ନେବି ଗାଆଁ ବୁଲେଇ,
ରେଶମ ଝୁଲାରେ ଦେବି ଝୁଲେଇ ।



ଆମ ଦେଶ ଆମ ମାଆଟି ।
କୁନା, କୁନି ଯେବେ ବଡ଼ହୋଇଯିବେ
ରଖିବେ ତାହାର ନାଆଁଟି ।



ଅବୁଝା ହୋଇତୁ କାନ୍ଦିବୁ ଯେବେଟି
ଦେହରୁ ହଟିବ ବଳ ।
ନକାନ୍ଦି ଯେବେ ତୁ ହସିବୁ, ଖେଳିବୁ,
ସଭିଏ କହିବେ "ଭଲ" ।



ଝୁଲେଇ ଦେଉଚି ଦୋଳିରେ ତୋତେ
ସୁନାପୁଅ ମୋର କାନ୍ଦନା ଏତେ ।
ଝୁଲି ଝୁଲି ନିଦେ ପଡ଼୍ ତୁ ଶୋଇ
ଉଠିଲେ ଖାଇବୁ ଶାକର ଦହି ।



ହଳଦୀ ରଙ୍ଗଟି ସୁନ୍ଦର
ଆମ ଝିଅ ଯେବେ ହଳଦୀ ଲଗାଏ
କରୁଥାଏ ଘର ସୁନ୍ଦର ।
ହଳଦୀଆ ପାଟ ଶାଢ଼ୀ
ହଳଦୀ ରଙ୍ଗର ସୋରିଷ ଫୁଲଟି
ସୁନ୍ଦର ଦିଶଇ ଘରି ।

ହଳଦୀଆ 'ଗୋଡ଼ବାଣ'
କୁସୁମ, କଦମ୍ବ ସୁନାଖି, ସେବତି
କନିଅର ଫୁଲ ଜାଣ ।



ଆରେ, ଆରେ, ଆରେ ଏଇଟି କିଏ
ତା ହାତରେ ଟିକି ବନ୍ଧୁକଟିଏ ।
ବୀରର ପୋଷାକ, ବୀରର ବେଶ
ଜଗିବ କହୁଛ ଆମର ଦେଶ ।



ଦେଖା ଦରପଣ ମୁହଁଟି ତୋହର
ଦିଶିଲଣି ସତେ କଳା ।
ଅବୁଝା ହୋଇରୁ କାନ୍ଦରୁଟି ଯେବେ
ବସିଗଲା ତୋର ଗଳା ।
କେମିତି ଗାଇବୁ ଗୀତ ?
କଥା ଜମା ତୋର ବୁଝି ହେବ ନାହିଁ
ହସିବେ ସଙ୍ଗାତ ମିତ ।



ଗ୍ଭରୋଟି ଦଗର ଗ୍ଭରୋଟି ନାଆଁ
ପୂରୁବ ଦଗରେ ଆମର ଗାଆଁ ।
ପଶ୍ଚିମ ଦଗରେ ମାମୁଁଙ୍କ ଘର
ଉତ୍ତର ଦଗରେ ଗସ୍ତର ବିଲ ।
ଦକ୍ଷିଣ ଦଗରେ ପାହାଡ଼ ବଣ,
ପଶୁ ପକ୍ଷୀ ଜନ୍ତୁ କାହିଁରେ କଣ ।
ଠେକୁଆ, ହରିଣ, ମିରଗ, ହାତୀ
ବାଘ, ଭାଲୁ-ହେଣ୍ଟା, ବିଲୁଆ ପାତି ।
ଶୁଆ-ଶାରୀ-ବଣି-ବଗ ବଗୁଲି
ହଳଦୀ ବସନ୍ତ-କାଉ-କୋଇଲି ।
ମୟୂର ସହିତେ ରହନ୍ତି ତହିଁ—
କଳି, ଗୋଳ କେବେ କରନ୍ତି ନାହିଁ ।



ଖାଲି ରଖ ନାହିଁ ଜମାରୁ ଜାଗା
ଖାଲ, ଢିପ ସବୁ ଫସଲ ଲଗା ।
ଯତନ କରିଲେ ରତନ ମିଳେ
ଜାତି ଜାତି ଫଳ ପରିବା ଫଳେ ।



ସକାଳରୁ କୁନା ଉଠୁଛି ବୋଲି
ଦେହ ତା ରହୁଛି ଭଲ ।
କଅଁଳ ଖରଟି ଦେହରେ ପଡ଼ିଲେ
ରୋଗର ଉପୁଡ଼େ ମୂଳ ।
ଗାଧୋଇବା ଆଗୁ ମାଆ ଦେଉଛନ୍ତି
ଦେହସାରା ତେଲ ଘଷି ।
"ମୋ କୁନା ଖେଳିବ ଡାକ୍ତର ସଙ୍ଗେ
ଗେଲ" କହୁଛନ୍ତି ହସି ।
ଜେଜେମା କହନ୍ତି ମଇଳା ଦିଶୁଛି
କୁନା ନଖ କାଟିଦିଅ ।
ନଖ ମଳି ଯେବେ ପେଟକୁ ଯିବଟି
ବିଗିଡ଼ି ଯିବ ତା ଦେହ ।
ଗାଧୋଇବା ବେଳେ ଅପା ଦିଏ ତା'ର
ଦାନ୍ତ ସାରା ଘଷିମାଜି ।
ହସି ହସି କହେ ଆମ କୁନା ବାବୁ
ସଫା ଦିଶୁଅଛୁ ଆଜି ।



ହାତୀଟିକୁ ମୋର ସାଥିରେ ନେବି
ଆକାଶ ବୁଲାଇ ଦେଖାଇ ଦେବି ,
ଉଡ଼ାଜାହାଜରେ ବସି ।
ସାଙ୍ଗରେ ବି ମୋ ଯାଇଥିବେ ପୁଣି
ନେଉଳ, କୁକୁର, ପୁଷି ।
ବାଟରେ ଭେଟିଲେ ରକେଟ୍‌ଟିଏ
ଉଡ଼ାଜାହାଜକୁ ଛାଡ଼ି ।
ବସିବୁ ସେଥିରେ ସଭିଏଁ ଆମେ,
ଚନ୍ଦ୍ର ଦେଶେ ଯିବୁ ଉଡ଼ି !



ଗୁଡ଼ିରେ ଗୁଡ଼ି, ଗୁଡ଼ିରେ ଗୁଡ଼ି
ତୋ' ପରି ପୁଅ ଯିବ ଆକାଶେ ଉଡ଼ି ।
ଆକାଶରେ-ଜହ୍ନ, ତାରାଙ୍କ ଘର
ସେଇଠିକି ଯିବ ପୁଅ ଆମର ।
ବଉଦ ପରକା ଭାସିବ ସିଏ
ଜହ୍ନଟିଏ ପରି ହସିବ ।
ଆକାଶ ଗୋଟାକ ବୁଲି ବୁଲିକା
ସବୁ ଦେଖିସାରି ଆସିବ ।



ବେଙ୍ଗୁଲି ବେଙ୍ଗୁଲି ଦେଏଲୋ ପାଣି
ମାଆ ରଖିଛନ୍ତି କାକରା ଛାଣି ।
ବାପା ଆଣିଛନ୍ତି ସନ୍ଦେଶ, ଖଜା,
ଛେନା ପୋଡ଼ପିଠା, ମୁଡ଼ୁକି, ଗଜା ।
ଖୁଡ଼ୀ ଭୁଣିଛନ୍ତି ଗରମ ପୁରି
ମୁଆଁ ବଳିଛନ୍ତି ଜେଜେମା ବୁଢ଼ୀ ।
ଅପା କରିଛନ୍ତି ଖଇର ଭଜା
ଚାଖିଲେ ଜାଣିବୁ କେମିତି ମଜା ।
ତୁ, ମୁଁ ଦୁହେଁ ଖାଇବା ବସି
କର୍ କର୍ ହୋଇ ଦେବାଟି ହସି ।



ମେଘରେ ମେଘ ପାଣି ଦେଏ.
ମାଟି ସେ ପାଣିକୁ ଶୋଷି ନେଏ ।
ଶୋଷି ନେଇ ଗଛ ଉଠା
ଗଛରେ ପୁରୁ ଛୋଟା-ପଠା ।
ଫୁଟୁ ଫୁଲ-ଫଳୁ ଫଳ
ଆମର ପୁଅ ଖାଉ ସେ ଫଳ ।
ବଢୁ ତା ଦେହ, ମନର ବଳ ।
ଶକତ ହେଉ ସତେ କି ଲୁହା
ପାଲଟି ଯାଉ ଖୀରର ଛୁଆ ।



ମାଟିର, କାଠର ଯେତେ କଣ୍ଢେଇ
ଝିଅ ଦେଇଅଛୁ ଘର ସଜେଇ ।
କାଚ କଣ୍ଢେଇକ ପାଏ ସେ ଭଲ
କାଳେ ଭାଙ୍ଗିଯିବ ! ସେ ଲାଗି ଡର ।
ଦେଖୁଥାଏ ସିନା-ଆଖି ପୂରେଇ
ଏଠି ସେଠି ତାକୁ ପକାଏ ନାହିଁ ।
ପାଠ ପଢ଼ା ପଢ଼ି ନଥିବା ବେଳେ
କଣ୍ଢେଇ ସବୁଙ୍କୁ ଧରି ସେ ଖେଳେ ।



ଦଶ, ସାନ୍ତ ସତର
କ୍ଲପ୍ ମୁଦ୍ ଚୂଡ଼ା ନାହିଁ
ଗଛ, ଲତା ପତର ।
କ୍ଷୁଦ୍ର କ୍ଷୁଦ୍ର ଥାଳିଆ
ଏଠି ସେଠି ପକାନାହିଁ
ଏଣୁ ତେଣୁ ଅଳିଆ ।
ଶୀତ ବାଆ ବହିଲା ।
ବହି, ଖାତା, ପ୍ୟାଣ୍ଟ ଜାମା
କରନାହିଁ ମଇଳା ।
ନାଲି ନାଲି ପଥର ।
ଖେଳ ସାରି ସାଇତ ଦେ'
ଖେଳନାକୁ ଏଥର ।
ସୁନା ଝିଅ, ପୁଅଟି ।
ଖାଇବା ଆଗରୁ ଧୁଅ
ହାତ ଆଉ ମୁହଁଟି ।
ଝରଯାଏ ଝରଣା ।
ଭୂତ-ପ୍ରେତ ମିଛ କଥା
ଜମା କେହି ଡରନାଁ । ।



ଟିକି ଝିଅଟିଏ ହେଉ ପଛେ 'କ୍ଲୁ'
ତା' ପରି ହେବ କଏ ?

ଟିକି ଗାଲଟିରେ ପାଣି ଟୋପେ ନେଇ
ବଗିଚାରେ ସିଏ ଧାଏ ।
କୁଲୁଠାରୁ ବଡ଼ ଭାଇଟି ତାହାର
କେଉଁଥିକୁ ନୁହେଁ ଊଣା ।
ମଞ୍ଜି ଲଗାଠାରୁ, ଘାସ ବଛାଯାଏ
ସବୁ କାମ ତାକୁ ଜଣା ।
ମାଆ କହନ୍ତି ଏ ଗଛ ସବୁ ଲାଗି
ଦାନା-କନା ଆମେ ପାଉ ।
ପାଣି, ପବନ ସେ ଯୋଗାଏ ଅମକୁ
ଆମେ ସୁଖେ ରହୁଥାଉ ।
ସବୁ ଫୁଲ ଫଳ ପଶବାକୁ ଗଛ
ଧଏ ସିନା ଆମ ପାଇଁ ।
ମନେରଖ ପିଲେ ଟିକି ଗଛ ସବୁ
କେବେ ଉପାଡ଼ିବ ନାହିଁ ।
ସବୁ ବରଷ ଆମ ପୁଅର
ଜନମ ଦିନ ହୁଏ ।
ସେଦିନ ସିଏ ମାଆଙ୍କୁ ତା'ର
ହସି ହସିକା କୁହେ ।
"ଆଜି ମୁହିଁ ଗୁଆ ଗଛଟେ
ଲଗେଇ ଦେବି ଯେବେ ।
ବଡ଼ ଦିନକୁ ବହୁତ ଫଳ
ଦେବ ସେ ମୋତେ ତେବେ ।

□

କୁଲୁ କହନ୍ତି ଶୁଣ ।
ଶ୍ରାବଣ ମାସେ ପଡ଼ିବ ପରା
ମୋ' ଜନମ ଦିନ ।
ଭାଇଠୁ ଦେଖି ମୁଁ ବି ଗୋଟେ
ଲଗେଇ ଦେବି ଗଛ ।
ଗଛର କଥା ଆଗେ ବୁଝିବି
ସବୁକୁ ରଖି ପଛ ।

